ପ୍ରାଚୀ ଗ୍ରନ୍ଥମାଳା

ଦ୍ୱିତୀୟ




# ରହସ୍ୟ ମଞ୍ଜରୀ

ଦେବଦୁର୍ଲଭ ଦାସ

ଶ୍ରୀ

# ରହସ୍ୟ ମଞ୍ଜରୀ

ଭକ୍ତକବି ଦେବଦୁର୍ଲ୍ଲଭ ଦାସଙ୍କ-ବିରଚିତ ।

ବିଭିନ୍ନପାଠ ଓ ସୁବିସ୍ତୃତ ମୁଖବନ୍ଧ ସହ

ରେଭେନ୍‌ସା କଲେଜର ଭୂତପୂର୍ବ ଅଧ୍ୟାପକ

୬ ଡଃ ଆର୍ତ୍ତବଲ୍ଲଭ ମହାନ୍ତି, ଏମ୍. ଏ. ଡ଼ି., ଲିଟ୍‌ଙ୍କ

ଦ୍ୱାରା ସଙ୍କଳିତ ଓ ପ୍ରକାଶିତ

1965

ମୂଲ[illegible]୧୦.୫୦

# ମୁଖବନ୍ଧ

ଆମ୍ଭେ ଏହି ରହସ୍ୟମନ୍ତ୍ରଗୀତା ଗ୍ରନ୍ଥ ଉତ୍କଳର ଭିନ୍ନ ଭିନ୍ନ ସ୍ଥାନରୁ ସଂଗୃହୀତ ପାଞ୍ଚ ଖଣ୍ଡ ତାଳପତ୍ର ପୋଥି ସାହାଯ୍ୟରେ ସଙ୍କଳନ

**ଷଣ୍ଡୁପ୍ରାପ୍ତ ।**

କରିଅଛୁଁ । ପ୍ରଥମ (କ) ପୋଥି ଆମ୍ଭ ନିଜ ଭାଗବତ ଗାଦିରୁ ପ୍ରାପ୍ତ । ଆମ୍ଭର ଗୃହ କଟକ ଜିଲାରେ ହେଲେହେଁ ପୋଥି ଖଣ୍ଡିକ କିନ୍ତୁ ପୁରୀ ଜିଲାର । ଏହାର "ଲେଖନକାର ଦେବଙ୍କ ଭଗବାନ ନାୟକ, ଲେମ୍ବାଇବିସି ବଡ଼ପଦା ଗ୍ରାମରେ ରହଣି ।" ଲେଖନ ସମାପ୍ତ ଦିନ ବୀରକିଶୋରଦେବ ମହାରାଜାଙ୍କ ବିଜେ ଶୁଭରାଜ୍ୟେ ସମସ୍ତ ୪୭ ଅଙ୍କ କୁମ୍ଭ ୨୨ ଦିନ । (ଖ) ପୋଥି ଆମ୍ଭ ଛାତ୍ର ଢେଙ୍କାନାଳବାସୀ ଶ୍ରୀମାନ୍ ବୃନ୍ଦାବନ ଧଳଙ୍କଠାରୁ ପ୍ରାପ୍ତ । ଏ ପୋଥିରେ କିନ୍ତୁ ଲେଖନ ସମାପ୍ତି ଦିନର ଉଲ୍ଲେଖ ନାହିଁ । (ଗ) ପୋଥି ପୁରୀର କଲେକ୍ଟର ରାୟ ବାହାଦୁର ଶ୍ରୀଯୁକ୍ତ ଦୟାନିଧି ଦାସ, ବି ଏ.ଙ୍କ ଭାଗବତ ଗାଦିରୁ ପ୍ରାପ୍ତ । ଏହାର ଲେଖନକାର ମଧ୍ୟ ଲେଖା ସମାପ୍ତିର ସମୟ ନିର୍ଦ୍ଦେଶ କରି ନାହାନ୍ତି । (ଘ) ପୋଥି ଆମ୍ଭ ଛାତ୍ର ବାଙ୍କୀ ନିବାସୀ ଶ୍ରୀମାନ୍ କୈଳାସଚନ୍ଦ୍ର ମହାପାତ୍ର, ବି. ଏ.ଙ୍କ ଭାଗବତ ଗାଦିରୁ ଆନୀତ । ଏ ଗ୍ରନ୍ଥର ଲେଖନକାର ମଧ୍ୟ ଏ ଗ୍ରନ୍ଥର ଶେଷରେ କୌଣସି ସମୟ ଉଲ୍ଲେଖ କରି ନାହାନ୍ତି । କିନ୍ତୁ ଏ ଗ୍ରନ୍ଥ ସଙ୍ଗରେ ଆଉ ଖଣ୍ଡି ଏ ଗ୍ରନ୍ଥ ଗୋଟିଏ ପୋଥିରେ ଅଛି । ଦ୍ୱିତୀୟ ଗ୍ରନ୍ଥର ଲେଖନକାର "ବେହେରା ପ୍ରଧାନ ଚନ୍ଦ୍ର ମହାପାତ୍ରଙ୍କ ? ପୁଅ ଭାଗୀରଥୀ ସାହୁ ।" ଦୁଇ ଗ୍ରନ୍ଥର ଲେଖା ଅକ୍ଷରରୁ ପ୍ରତୀୟମାନ ହେଉଅଛି ଯେ ଏ ଗ୍ରନ୍ଥ ଦୁଇ ଖଣ୍ଡିର ଲେଖକ ଏକ ଏବଂ ସେ ସେହି ଭାଗୀରଥି ସାହୁ । ସେ ଗ୍ରନ୍ଥର ଲେଖା ସମାପ୍ତି ଦିନ ଉଲ୍ଲେଖ କରିଅଛନ୍ତି । ବୀର ଶ୍ରୀ ରାମଚନ୍ଦ୍ର ଦେବ ମହାରାଜାଙ୍କ ୩୬ ଅଙ୍କ ମିଥୁନ ୨୮ ଦିନ ବୁଧବାର । (ଚ) ପୋଥି ଯାଜପୁର ନିବାସୀ କୁଣ୍ଡପରିବାରଙ୍କ ଭାଗବତ ଗାଦିରୁ ଆନୀତ । ଏ ପୋଥିର ଲେଖନକାର ଶ୍ରୀକୃଷ୍ଣ କୁଣ୍ଡ । ଗ୍ରନ୍ଥର ସମାପ୍ତି ଦିବସ ଶ୍ରୀମନ୍ମୁକୁନ୍ଦଦେବଙ୍କ ଅଙ୍କ ସନ— ୧୨୦୭ ସାଲ ମକର ୧୨ ଦିନ ।

**କବିଙ୍କ କାଳ ନିରୂପଣ।**

ଅଭିମନ୍ୟୁ ସାମନ୍ତସିଂହାର ତାଙ୍କ [ଅପ୍ରକାଶିତ] ରସବତୀ ଗ୍ରନ୍ଥ ଶେଷରେ ଲେଖି ଅଛନ୍ତି "ଶ୍ରୀ ବୀରକିଶୋର ନୃପତି। ନବଷଷ୍ଠୀ ଅଙ୍କେ ସମାପ୍ତି।" ରହସ୍ୟମଞ୍ଜରୀ (କ) ପୋଥିର ଲେଖନକାର ଅଭିମନ୍ୟୁଙ୍କ ରସବତୀ ସମାପ୍ତିର ୧୮ ବର୍ଷ ପୂର୍ବରେ ତାଙ୍କ ଲେଖା ଶେଷ କରିଥିଲେ। ଦାଶରଥି ଦାସଙ୍କ ବ୍ରଜବିହାର ଗ୍ରନ୍ଥ ରାମଚନ୍ଦ୍ର ଦେବଙ୍କ ୮ ଅଙ୍କ ୧୬୫[illegible] ଶକାବ୍ଦରେ ସମାପ୍ତ ହୋଇଥିଲା। (ଘ) ପୋଥିର ଲେଖନକାର ମଧ୍ୟ ତାଙ୍କ ଲେଖା ସମାପ୍ତି ବ୍ରଜବିହାର ସମାପ୍ତିର ୨୩ ବର୍ଷ ପରେ କରିଥିଲେ। ଏଥିରୁ ସ୍ପଷ୍ଟ ପ୍ରତୀୟମାନ ହେଉଅଛି ଯେ ରହସ୍ୟମଞ୍ଜରୀର କବି ଅଭିମନ୍ୟୁ ଓ ଦାଶରଥିଙ୍କର ବହୁପୂର୍ବ। ରହସ୍ୟମଞ୍ଜରୀ ଗ୍ରନ୍ଥ ଅପ୍ରାକୃତିକ ଶବ୍ଦାଲଙ୍କାର ଆଦି ଦୋଷରୁ ପୂର୍ଣ୍ଣଭାବେ ମୁକ୍ତ। ଏ ଦୋଷ ଦୀନକୃଷ୍ଣଙ୍କ ପୂର୍ବକାଳରୁ ଉତ୍କଳ-ସାହିତ୍ୟରେ ଅଳ୍ପାଧିକ ପରିମାଣରେ ପରିଦୃଷ୍ଟ ହୁଏ। ଉକ୍ତ ଦୋଷରୁ ମଥୁରାମଙ୍ଗଳ ଓ ବ୍ରଜବିହାର ମଧ୍ୟ ସଂପୂର୍ଣ୍ଣ ମୁକ୍ତ ନୁହନ୍ତି। ରହସ୍ୟମଞ୍ଜରୀରେ ଦୀନକୃଷ୍ଣ ଉପେନ୍ଦ୍ରାଦିଙ୍କ ଗ୍ରନ୍ଥମାନଙ୍କରେ ପରିଦୃଶ୍ୟମାନ ଅର୍ଥାଲଙ୍କାର-ଶବ୍ଦାଲଙ୍କାର-ହେତୁକ ଚିତ୍ରକାବ୍ୟର ଅପ୍ରାକୃତିକ ଲକ୍ଷଣ ଆଦୌ ପରିଲକ୍ଷିତ ହୁଏ ନାହିଁ କହିଲେ ଚଳେ। କବି ଦେବଦୁର୍ଲ୍ଲଭ ଦୀନକୃଷ୍ଣଦାସାଦିଙ୍କର ପୂର୍ବବର୍ତ୍ତୀ, କାରଣ ତାଙ୍କ ରହସ୍ୟମଞ୍ଜରୀରେ ଦୃଷ୍ଟ 'ଶ୍ରୋଣେହା' 'ବାଢସିଲେ' 'ମେହ୍ନୁ' 'ବିଷଇ' 'କାଞ୍ଛଇ' 'ସାରିଷ' 'ପିରେଗ' 'ଗାଜିଲେ' 'ସଶିଲ' ଆଦି ଶବ୍ଦ ଦୀନକୃଷ୍ଣଙ୍କ ଗ୍ରନ୍ଥରେ ପରିଦୃଷ୍ଟ ହୁଏ ନାହିଁ। "ଶ୍ରୋଣେହା" ଶବ୍ଦ ଆମ୍ଭଙ୍କୁ ଯେତେଦୂର ଜଣା ଶାରଳା ଦାସଙ୍କ ବ୍ୟତୀତ ଅନ୍ୟ କେହି ବ୍ୟବହାର କରି ନାହାନ୍ତି। କବି ଗ୍ରନ୍ଥ ଶେଷରେ କହି ଅଛନ୍ତି ଯେ ଏ କାବ୍ୟବସ୍ତୁ (Plot) ତାଙ୍କ ପୂର୍ବବର୍ତ୍ତୀ କୌଣସି କବିଙ୍କ ଦ୍ୱାରା ଗୃହୀତ ହୋଇ ନାହିଁ। ତାଙ୍କର ଏ ଉକ୍ତିରେ ଅବିଶ୍ୱାସର କାରଣ ନାହିଁ। ଅଚ୍ୟୁତାନନ୍ଦ ଦାସ ଏହି ବିଷୟକୁ କିଞ୍ଚିତ୍ ପୃଥକ୍ ଭାବରେ ତାଙ୍କ ଶୂନ୍ୟ ସଂହିତାରେ ବର୍ଣ୍ଣନ କରିଅଛନ୍ତି। ଦୀନକୃଷ୍ଣଙ୍କ ନାମରତ୍ନ ଗୀତା ଓ ରସବିନୋଦରେ ଏହା ପ୍ରକାରାନ୍ତରେ ବର୍ଣ୍ଣିତ ହୋଇଅଛି। ଅର୍ବାଚୀନ ହେତୁ ଦୀନକୃଷ୍ଣ ଦାସଙ୍କ

ବିଷୟ ଏଠାରେ ଆଦୌ ବର୍ଣ୍ଣନୀୟ ନୁହେଁ । ଅଚ୍ୟୁତାନନ୍ଦ ୧୬ଶ ଶତାବ୍ଦୀର ଲୋକ । ଏଥିରୁ ଅନୁମିତ ଯେ ଦେବଦୁର୍ଲଭ ଦାସ ଅଚ୍ୟୁତାନନ୍ଦଙ୍କର ୪୦।୫୦ ବର୍ଷର ପୂର୍ବବର୍ତ୍ତୀ, ସମସାମୟିକ ଅଥବା ଶୂନ୍ୟସଂହିତା ପ୍ରଚୁରର ପୂର୍ବକାଳର, ଅର୍ଥାତ୍ ଅଚ୍ୟୁତାନନ୍ଦଙ୍କର ୨୦।୩୦ ବର୍ଷର ପରବର୍ତ୍ତୀ । ଆମ୍ଭମାନଙ୍କ ମଧ୍ୟରୁ ଅନେକେ କହିପାରନ୍ତି ଦେବଦୁର୍ଲଭଙ୍କ (୧) ଗ୍ରନ୍ଥଜ୍ଞାନ ଓ (୨) ବୈଷ୍ଣବତତ୍ତ୍ୱଜ୍ଞାନ ତତ୍କାଳୀନ କୌଣସି ଉତ୍କଳୀୟଠାରେ ସମ୍ଭବପର ନ ଥିଲା । ଏପରି ମତ ପୋଷଣ କରିବା କିନ୍ତୁ ନିତାନ୍ତ ଭ୍ରମାତ୍ମକ । ଅଚ୍ୟୁତ, ଅନନ୍ତ, ଯଶୋବନ୍ତାଦିଙ୍କର ଲେଖାରେ ଆମ୍ଭେ ଗୁର୍ଜ୍ଜରୀ, କଳଶା, ରସ-କୋଇଲ, ବଙ୍ଗଳାଶ୍ରୀ ଆଦି ବୃତ୍ତ ପାଇଅଛୁଁ । ଐତିହାସିକମାନେ ଜାଣନ୍ତି ଯେ ଉତ୍କଳର ଗାୟକରତ୍ନ ମହାପାତ୍ର ଆକବରବାଦଶାଙ୍କ ରାଜସଭାରେ ଓଡ଼ିଶାର ସଙ୍ଗୀତମାନ ଗାନ କରି ସମସ୍ତଙ୍କୁ ଚମତ୍କୃତ କରିଥିଲେ । ନିଜର ପ୍ରାଚୀନ ମହତ୍ତ୍ୱକୁ ନ ଜାଣି ନିଜକୁ ହୀନ ମନେ କରିବା ଓ ପୂର୍ବ ଗୌରବର ଉପଯୁକ୍ତ ଆସ୍ପଦ ହେବାରେ ବ୍ରତୀ ନ ହେବା ଆମ୍ଭମାନଙ୍କ ହୀନ ମାନବିକତାର ପରିଚାୟକ । ଦ୍ୱିତୀୟ ମୀମାଂସା ବିଷୟରେ ଆମ୍ଭେ କହୁଁ ଯେ, ରୁଦ୍ରପ୍ରତାପଙ୍କ ଦାକ୍ଷିଣାତ୍ୟର ଶାସକ ଉତ୍କଳର ତଥା ଭାରତର କ୍ଷଣଜନ୍ମା ବୈଷ୍ଣବମଣି ଉତ୍କଳନନ୍ଦନ କରଣକୁଳଚନ୍ଦ୍ର ରାୟ ରାମାନନ୍ଦ —ଚୈତନ୍ୟଙ୍କ, ସ୍ୱେଚ୍ଛାନୁଯାୟୀ, ବୈଷ୍ଣବ ଧର୍ମର ତତ୍ତ୍ୱ ବ୍ୟକ୍ତ କରିଥିଲେ । ରାମାନନ୍ଦଙ୍କ ସହ ଚୈତନ୍ୟଙ୍କର ନିମ୍ନଲିଖିତମତେ ମିଳନ ଘଟିଥିଲା । ରୁଦ୍ର-ପ୍ରତାପଙ୍କ ରାଜସଭାରେ ସାର୍ବଭୌମ ବେଦାନ୍ତର ପଣ୍ଡିତ ଥିଲେ । ସେ ଏକଦା ରାମାନନ୍ଦଙ୍କ ମୁଖରୁ ଦ୍ୱୈତବାଦର ସଂସ୍ଥାପନା ଶୁଣି ତାଙ୍କୁ ଶୂଦ୍ର ବୋଲି ତିରସ୍କାର କରିଥିଲେ । ପରେ କିନ୍ତୁ ସେ ଚୈତନ୍ୟଙ୍କ ମୁଖରୁ ବେଦାନ୍ତର ଦ୍ୱୈତବାଦତ୍ୱ ଶ୍ରବଣ କରି ତହିଁରେ ଶ୍ରଦ୍ଧାବାନ୍ ହେଲେ; ତେତିକି ନୁହେଁ ପ୍ରକାଶ୍ୟରେ ନିଜକୁ ଦ୍ୱୈତବାଦୀ ବୋଲି ଘୋଷିତ କଲେ । ଦାକ୍ଷିଣାତ୍ୟ ଯାତ୍ରାକାଳରେ ରାମାନନ୍ଦଙ୍କୁ ସାକ୍ଷାତ୍ କରିବା ନିମନ୍ତେ ସାର୍ବଭୌମ୍ୟ ଚୈତନ୍ୟଙ୍କୁ ଅନୁରୋଧ କରିଥିଲେ :···

"ତବେ ସାର୍ବଭୌମ କହେ ପ୍ରଭୁର ଚରଣେ
ଅବଶ୍ୟ ପାଳିବେ ପ୍ରଭୁ ମୋର ନିବେଦନେ

ରାମାନନ୍ଦ ରାୟ ଆଛେ ଗୋଦାବରୀ ତୀରେ
ଅଧିକାରୀ ହୟେନ ତିଁହୋ ବିଦ୍ୟାନଗରେ
ଶୂଦ୍ର ବିଷୟୀ ଜ୍ଞାନେ ଉପେକ୍ଷା ନା କରିବେ
ଆମାର ବଚନେ ତାରେ ଅବଶ୍ୟ ମିଲିବେ ।
ତୋମାର ସଙ୍ଗେର ଯୋଗ୍ୟ ତିଁହୋ ଏକଜନ
ପୃଥିବୀତେ ରସିକ ଭକ୍ତ ନାହିଁ ତାର ସମ ।
ପାଣ୍ଡିତ୍ୟ ଆର ଭକ୍ତିରସ ଦୁହେଁର ତିଁହୋ ସୀମା
ସମ୍ଭାଷିଲେ ଜାନିବେ ତୁମି ତାହାର ମହିମା ।
ଅଲୌକିକ ବାକ୍ୟଚେଷ୍ଟା ତାର ନା ବୁଝିୟା
ପରିହାସ କରିୟାଛି ତାଁରେ ବୈଷ୍ଣବ ଜାନିୟା
ତୋମାର ପ୍ରସାଦେ ଏବେ ଜାନିନୁ ତାଁର ତତ୍ତ୍ୱ
ସମ୍ଭାଷିଲେ ଜାନିବେ ତାର ଯେମନ ମହତ୍ତ୍ୱ ।
(ଚୈତନ୍ୟ ଚରିତାମୃତ, ମଧ୍ୟଲୀଳା)

ପୁଣି ଜଗନ୍ନାଥ ଦାସ ଜଣେ ପ୍ରଧାନ ପୁରାଣବକ୍ତା ଥିଲେ । ଭାଗବତ ଛଡ଼ା ଅନ୍ୟାନ୍ୟ ବୈଷ୍ଣବ ପୁରାଣରେ ତାଙ୍କର ବିଶେଷ ପ୍ରାବୀଣ୍ୟ ଥିଲା । ବଳରାମ ଦାସ ମଧ୍ୟ ବୈଷ୍ଣବ ଗ୍ରନ୍ଥ ଲେଖିଥିଲେ । ଭାଗବତ, ବ୍ରହ୍ମବୈବର୍ତ୍ତ, ବିଷ୍ଣୁ, ପଦ୍ମ, ଆଦି, ହରିବଂଶ ଓ ବ୍ରହ୍ମାଦି ପୁରାଣରେ ବୈଷ୍ଣବ ଧର୍ମର ପନ୍ଥା ଓ ତତ୍ତ୍ୱ ଶୋଭନ ରୂପେ ପ୍ରକଟିତ ହୋଇଅଛି । ଏଣୁ ଚୈତନ୍ୟଙ୍କ ପୂର୍ବ-କାଳରେ ଉତ୍କଳର କତିପୟ ଲୋକ ମାଧ୍ୱମତାନୁରୂପ ବୈଷ୍ଣବ ତତ୍ତ୍ୱରେ ମଜ୍ଜିବାର ଯେ ଅବକାଶ ପାଇଥିଲେ ତାହା ସୁନିଶ୍ଚିତ । ପରେ ପ୍ରେମମୂର୍ତ୍ତି ଚୈତନ୍ୟଚନ୍ଦ୍ରଙ୍କୁ ଦେଖି ସେମାନଙ୍କର ଧର୍ମଭାବ ଚରିତାର୍ଥ ହୋଇ କେବଳ ବୃଦ୍ଧିଲାଭ କଲା ଓ ଫଳତଃ ଦେଶରେ ମଧ୍ୟ ବୈଷ୍ଣବ ଧର୍ମ ଦୃଢ଼ ରୂପେ ସଂସ୍ଥାପିତ ଓ ବହୁଳ ଭାବେ ପ୍ରଚରିତ ହେଲା ।

ଏ ସକଳ ଦୃଷ୍ଟିରେ ଚୈତନ୍ୟଙ୍କ ପୂର୍ବରୁ ଉତ୍କଳରେ ଯେ ଗୌଡ଼ୀୟ ମତାନୁରୂପ ବୈଷ୍ଣବ ମତ ଅଜ୍ଞାତ ଥିଲା, ଏହା କହିବା କେବଳ ବୁଦ୍ଧି-ମାନ୍ଦ୍ୟର ପରିଚାୟକ ।

ପୂର୍ବୋକ୍ତ କାରଣମାନଙ୍କରୁ ଆମ୍ଭର ଅନୁମାନ, ରହସ୍ୟମଞ୍ଜରୀର କବି ଦେବଦୁର୍ଲ୍ଲଭ ଦାସ ଖ୍ରୀଷ୍ଟୀୟ ୧୭ଶ ଶତାବ୍ଦୀର ଲୋକ ।

"**ରହସ୍ୟମଞ୍ଜରୀର** କବି ଗ୍ରନ୍ଥ ଶେଷରେ ୨୪ ଛାନ୍ଦରେ **କଥାବସ୍ତୁ ସଂସ୍ଥାପନ**" ଲେଖିଅଛନ୍ତି ।

ରହସ୍ୟମଞ୍ଜରୀ ଏ ବିଚିତ୍ରମସ୍ତ ରସ ।
ଏ ସୁଖ ଜାଣିବ ଯେହୁ ବିବେକୀ ପୁରୁଷ ।
ଅବିବେକ ବୋଲିବ ଏ କଉଁ ପାଠେ ଥିଲା ।
ଥିଲା ଯେବେ କବି କମା ଆଗହୁଁ ନ କଲା ।
ବିବେକୀ ବୋଲିବେ ଏ ଗୁପତେ ଥିଲା ରହି ।
ସରସ୍ୱତୀ ଭଣ୍ଡାରେ ଗୁପତେ ଥିଲା ଥୋଇ ।
ଯେଉଁ ପୁତ୍ର ବାନ୍ଧିଲା ତାହାକୁ କଲା ଦୟେ ।
ମହିମା ଅନନ୍ତ କେତେ କହିବା ନିର୍ଣ୍ଣୟେ ।

× × × ×

ଦେଲା ଲୋକ ଜାଣେ ଆଣିଲା ଲୋକ ଜାଣେ ।
ବିବେକୀ ଜାଣିବେ ତାହା ମଧ୍ୟପାତ୍ର ପଣେ ।

ରାଧାଙ୍କର ଶ୍ରେଷ୍ଠତ୍ୱ ପ୍ରତିପାଦନହିଁ ଏ ଗ୍ରନ୍ଥର ପ୍ରଧାନ ଉଦ୍ଦେଶ୍ୟ । ଐଶ୍ୱର୍ଯ୍ୟଲୀଳାଠାରୁ ମାଧୁର୍ଯ୍ୟଲୀଳାର ଶ୍ରେଷ୍ଠତ୍ୱ ଏଥିରେ ଶୋଭନ ରୂପରେ ପ୍ରଦର୍ଶିତ । ମାଧୁର୍ଯ୍ୟଲୀଳା-ପ୍ରଶସ୍ତି କଲେଣ୍ଟି ବ୍ରଜବିହାର କବି ଦାଶରଥି ଦାସ କହିଅଛନ୍ତି:—

"ରାଧା ଜଣାଇଲେ ପୁରୁଷୋତ୍ତମ । ଏଥିରୁ ଅଧିକ ଅଛି କି ପ୍ରେମ ।
ଶୃଙ୍ଗାର ଉଜ୍ଜ୍ୱଳ ରସରେ ସାର । ଆଉ ଉତ୍କଣ୍ଠା ଅଛି କି ପାର ।
କୃଷ୍ଣ କହନ୍ତି ଶୁଣ ପ୍ରାଣପ୍ରିୟେ । ଶୃଙ୍ଗାରରସ ଲୀଳା ପ୍ରେମମୟେ ।
ଐଶ୍ୱର୍ଯ୍ୟ ମାଧୁର୍ଯ୍ୟ ଦୁଇପ୍ରକାର । ଐଶ୍ୱର୍ଯ୍ୟରେ ପ୍ରକାଶ ବିସ୍ତର ।
ପରବ୍ରହ୍ମାଙ୍କରେ ମାଧୁର୍ଯ୍ୟ ବିଶେଷ । ଉତ୍କଣ୍ଠା ପ୍ରେମ ଭାବ ଅଶେଷ ।"

ରହସ୍ୟମଞ୍ଜରୀର ପ୍ରଧାନ ନାୟିକା ରୁକ୍ମିଣୀ ଓ ନାୟକ ଶ୍ରୀକୃଷ୍ଣ । ମହାଲକ୍ଷ୍ମୀ ରୁକ୍ମିଣୀଙ୍କର ଖଣ୍ଡିତାଙ୍କନରେ ତତ୍ତ୍ୱୋପଲବ୍ଧି ଏ ଗ୍ରନ୍ଥର ସାରମର୍ମ ।

ଏହି ବସ୍ତୁ ବିଷୟ ଅଚ୍ୟୁତାନନ୍ଦ ଦାସ କିପରି ଗ୍ରହଣ କରିଅଛନ୍ତି ତାହା ବର୍ତ୍ତମାନ ଦେଖାଯାଉ । ତାଙ୍କ ଶୂନ୍ୟସଂହିତାର ଦଶମ ଅଧ୍ୟାୟରେ ବର୍ଣ୍ଣିତ ଅଛି, ଦ୍ୱାରକାରେ ଶ୍ରୀକୃଷ୍ଣ ଉନକୁନ୍ଦନ କୃଶତା ଲଭ କରିବାରୁ ତାଙ୍କ ନିଯୋଗରେ ଥିବା ରୁକ୍ମିଣୀ, ସତ୍ୟଭାମା ପ୍ରଭୃତି ଅଷ୍ଟପାଟବଂଶୀ ଓ ତୁଳସୀ ତାଙ୍କୁ ତହିଁର କାରଣ ଜିଜ୍ଞାସା କଲେ । କୃଷ୍ଣ ଉତ୍ତରରେ କହିଲେ:—

"ଆଗେ ରାଧା ପଛେ ମୁହିଁ ଲମ୍ପଟ ଭାବରେ
ଏକ ବୀଜ ବେନିଫାଳ ଯୁଗଳ ଅଙ୍ଗରେ ।
× × ×
ନବଧା ଭକ୍ତିରେ ଶତେ ସ୍ପର୍ଦ୍ଧି ଅଛି ରହି
ମୋର ମନ ହରେ ରାଧା ପ୍ରୀତିରସ ଦେଇ ।
ତାଙ୍କ ବିନୁ କ୍ଷୀଣ ହେଲା ଆମ୍ଭର ଶରୀର
କ୍ଷଣେ ନ ତେଜୁଁ ଯେ ଆମ୍ଭେ ରାଧା ପ୍ରେମଆଳ ।"

ଏହା ଶୁଣି ଅଷ୍ଟପାଟବଂଶୀମାନେ ଦୁଃଖିତ ହେଲେ ଓ ଆଶ୍ଚର୍ଯ୍ୟ ଅନୁଭୂତରେ ସେହି ଗୋଲୋକ ବୃନ୍ଦାବନ ଦର୍ଶନ ନିମନ୍ତେ କୃଷ୍ଣଚନ୍ଦ୍ରଙ୍କୁ ଅନୁରୋଧ କଲେ । ଗରୁଡ଼ ପୃଷ୍ଠରେ କୃଷ୍ଣ ସୁଦାମା ସହିତ ଅଷ୍ଟପାଟବଂଶୀମାନଙ୍କୁ ଘେନି ନିତ୍ୟ ରାସମଣ୍ଡଳ ଅଭିମୁଖରେ ସ୍ୱର୍ଗପଥରେ ଅଗ୍ରସର ହେଲେ । ନିତ୍ୟସ୍ଥଳୀର ପ୍ରଥମ ଦ୍ୱାର ଓ ଦ୍ୱିତୀୟ ଦ୍ୱାର ଅତିକ୍ରାନ୍ତ ହୁଅନ୍ତେ ସେଠାରୁ ୨ ଯୁଗ ଦୂରବର୍ତ୍ତୀ ନିତ୍ୟ ରାସମଣ୍ଡଳ ନୟନଗୋଚର ହେବାରୁ ଗରୁଡ଼, ଅଷ୍ଟସଖୀ ପ୍ରଭୃତି ସମସ୍ତେ ମୂର୍ଚ୍ଛାଗତ ହେଲେ । ସଂଜ୍ଞାଲାଭ ପରେ କୃଷ୍ଣ ସେମାନଙ୍କୁ ରାଧାଭକ୍ତିର ଅନ୍ୟାନ୍ୟ ଭକ୍ତିଠାରୁ ଉତ୍କର୍ଷ ବୁଝାଇଲେ ଓ ସେମାନଙ୍କର ରାଜସିକ ଭକ୍ତିଭାବର ଅପକର୍ଷ ସେମାନଙ୍କର ମୂର୍ଚ୍ଛାଗମର କାରଣ ବୋଲି ନିର୍ଦ୍ଦେଶ କଲେ । ତାହା ପରେ ଅଷ୍ଟପାଟବଂଶୀମାନଙ୍କର ନିତ୍ୟ ରାସମଣ୍ଡଳ ଯିବାରେ ଅକ୍ଷମତା ଯୋଗୁଁ ସେମାନଙ୍କୁ ଗରୁଡ଼ ପୃଷ୍ଠରେ

ରଖାଇ କୃଷ୍ଣ ସଙ୍ଗରେ କେବଳ ତୁଳସୀ ଓ ଭକ୍ତ ସୁଦାମାଙ୍କୁ ନେଇ ନିତ୍ୟସ୍ଥଳୀ ପ୍ରତି ଅଗ୍ରସର ହେଲେ । ନିତ୍ୟରାସସ୍ଥଳୀରୁ ଏକଯୁଣ ଛଡ଼ାରେ ରହି ସେମାନେ ରାସ ଦେଖୁଅଛନ୍ତି ।

"ଏମନ୍ତ ସମୟେ ଏକ ସଖୀ ତହୁଁ ଆସି ।
ବୋଇଲାରେ ବାଳପୋଏ କାହୁଁ ଅଛ ଆସି ।
ନିରାକାର ମଣ୍ଡଳ ଏ ଗୋଲୋକ ସହାସ ।
ନିରାକାର ଭଜନ ଏଠାକୁ କମ୍ପା ଆସ ।
ନିରାକାର ଭଜିଥିଲେ ଏ ଭୂମିକି ପଶି ।
ନିମଗ୍ନଚିତ୍ତରେ ଏଥି ପ୍ରବେଶନ୍ତି ଆସି ।"

ଏ ସଖୀଙ୍କୁ ଅଚ୍ୟୁତାନନ୍ଦ ମହାମାୟା, ମହାଦୁର୍ଗା ବା ବୃନ୍ଦମାତାନାମରେ ଅଭିହିତ କରି ଅଛନ୍ତି ।

ଦୀନକୃଷ୍ଣ ଦାସ ତାଙ୍କ ନାମନୃଗୀତାର ୨୮।୨୯ ଓ ୩୦ ଅଧ୍ୟାୟରେ ବର୍ଣ୍ଣନା କରି ଅଛନ୍ତି ଯେ, ନନ୍ଦନନ୍ଦନ କୃଷ୍ଣ ଦେବୀ ତ୍ରିପୁରାଙ୍କୁ ନିତ୍ୟସ୍ଥଳୀ ଦେଖାଇବାକୁ ଅନୁରୋଧ କରିଥିଲେ । ତ୍ରିପୁରା ତାଙ୍କୁ ସ୍ତ୍ରୀ ବେଶରେ ନିତ୍ୟସ୍ଥଳୀର ଗୋପୀମାନଙ୍କ ସହ ନୃତ୍ୟ କରାଇଥିଲେ । ନୃତ୍ୟରେ ତ୍ରୁଟି ହେବାରୁ ଗୋପୀମାନେ ଜାଣିପାରିଲେ ଓ ନିରାକାର ହରି ମଧ୍ୟ ଧ୍ୟାନରେ ମାନବଦେହୀ କୃଷ୍ଣଙ୍କର ଧୃଷ୍ଟତା ଅବଗତ ହେଲେ । ନିରାକାର କ୍ରୋଧରେ ତ୍ରିପୁରାଙ୍କୁ କହିଲେ:—

"ଗୋପୀଙ୍କ ସଙ୍ଗରେ ତୋତେ ପଣ ଦେଲି ସହୁଁ ।
ମୁଖଅଙ୍ଗ ବସ୍ତ୍ର କଲା ଆଣିଲୁ ତୁ କାହୁଁ ।
ମାନବ ବସ୍ତ୍ରକୁ ଏଥୁଁ ଯାଅ ବେଗେ ଘେନ ।
ମର୍ତ୍ତ୍ୟମଣ୍ଡଳରେ ତୁମ୍ଭେ ଜାତ ହୁଅ ବେନି ।"

ରହସ୍ୟମଞ୍ଜରୀ କବି ଅଚ୍ୟୁତାନନ୍ଦଙ୍କସହ ନିମ୍ନଲିଖିତ ବିଷୟମାନଙ୍କରେ ଏକମତ ନୁହନ୍ତି । ଦେବଦୁର୍ଲଭଙ୍କ କାବ୍ୟର ନାୟିକା ରୁକ୍ମିଣୀ, ଅଚ୍ୟୁତଙ୍କର କିନ୍ତୁ ସତ୍ୟଭାମା ନାୟିକା । ମର୍ତ୍ତ୍ୟବୃନ୍ଦାବନ ବିଷୟରେ ଅଚ୍ୟୁତ ସମ୍ପୂର୍ଣ୍ଣ ନୀରବ । ଅଚ୍ୟୁତାନନ୍ଦଙ୍କ ଗ୍ରନ୍ଥ ଅନୁସାରେ କୃଷ୍ଣ ଅଷ୍ଟପାଟବଂଶୀଙ୍କ ସହ

ତ୍ରିପୁରାଙ୍କୁ ନେଇ ନିତ୍ୟସ୍ଥଳୀକୁ ଯାଇଥିଲେ । ଦେବଦୁର୍ଲ୍ଲଭଙ୍କ ମତରେ ରୁକ୍ମିଣୀଙ୍କ ବ୍ୟତୀତ କୃଷ୍ଣ ଆଉ କାହାରିକି ସଙ୍ଗରେ ନେଇ ନ ଥିଲେ । ଅଚ୍ୟୁତାନନ୍ଦ ଲେଖିଅଛନ୍ତି, ମହାମାୟା ମହାଦୁର୍ଗା ବା ବୃଦ୍ଧମାତାଙ୍କୁ ତୁଳସୀ କୃଷ୍ଣଚନ୍ଦ୍ର ଓ ସୁଦାମା ନିତ୍ୟସ୍ଥଳୀରୁ ଏକ ପୁଣ ଛଡ଼ାରେ ଭେଟିଥିଲେ । ଦେବଦୁର୍ଲ୍ଲଭଙ୍କ ମତରେ କୃଷ୍ଣ ରୁକ୍ମିଣୀଙ୍କ ସହ ନିତ୍ୟସ୍ଥଳୀର ଦ୍ୱାରଦେଶରେ ତ୍ରିପୁରାଙ୍କୁ ଭେଟିଥିଲେ । ବୃଦ୍ଧମାତା ସୁଦାମାଙ୍କୁ ନିରାକାର ମନ୍ତ୍ର ଦେବାର ଅଚ୍ୟୁତାନନ୍ଦ କହିଅଛନ୍ତି । କିନ୍ତୁ ଦେବଦୁର୍ଲ୍ଲଭ ଦାସ କହନ୍ତି, ତ୍ରିପୁରା କୃଷ୍ଣଚନ୍ଦ୍ରଙ୍କୁ ମନ୍ତ୍ର ଯନ୍ତ୍ର ଭେଦ ଶିକ୍ଷା ଦେଇଥିଲେ ଏବଂ ରୁକ୍ମିଣୀଙ୍କୁ ମନ୍ତ୍ରାଦି ଦାନ କରି ତାଙ୍କୁ ସମସ୍ତ ମହିଷୀଙ୍କର ଗୁରୁ କରିବାକୁ ଆଦେଶ ଦେଇଥିଲେ । ତ୍ରିପୁରା ଓ ବୃଦ୍ଧ ମାତା ମହାମାୟାଙ୍କୁ ଏକ କହି ଆମ୍ଭେମାନେ ଅଚ୍ୟୁତ ଓ ଦେବଦୁର୍ଲ୍ଲଭଙ୍କ ଉକ୍ତିର ବୈସାଦୃଶ୍ୟରେ ସାମଞ୍ଜସ୍ୟ ଆଣିପାରୁଁ । କିନ୍ତୁ ନିତ୍ୟସ୍ଥଳୀର ପ୍ରକୃତ ଦ୍ରଷ୍ଟା ତ୍ରିପୁରା । ତ୍ରିପୁରାଙ୍କ ଏତତ୍‌ସ୍ୱରୂପ ପଦ୍ମପୁରାଣ ପାତାଳ ଖଣ୍ଡରେ ବର୍ଣ୍ଣିତ ଅଛି ।

ଯତ୍ୟାଂ ସର୍ବଂ ସମୁତ୍ପନ୍ନଂ ଯସ୍ୟା-ମଦ୍ୟାପି ତିଷ୍ଠତି
ଲୟମେଷ୍ୟତି ତାଂ ଦେବୀଂ ଶ୍ରୀମତ୍ତ୍ରିପୁରସୁନ୍ଦରୀମ୍ ।
ଆରାଧ୍ୟ ପରୟା ଭକ୍ତ୍ୟା ତସ୍ୟୈ ସୁଖଂ ନିବେଦୟ
ତାଂ ବିନୈତତ୍ ପଦଂ ଦାତୁଂ ନ ଶକ୍ନୋମି କଦାଚନ ।

- ୭୪ ଅଧ୍ୟାୟ (୧୮।୧୯ ଶ୍ଳୋକ)

ତ୍ରିପୁରାଙ୍କର ରାଧାକୃଷ୍ଣଲୀଳାର ମୂଳକାରଣତ୍ୱ ରାଧାତନ୍ତ୍ରରେ ମଧ୍ୟ ପ୍ରତିପାଦିତ ।

ଏହା ଦୀନକୃଷ୍ଣଙ୍କ ଦ୍ୱାରା ମଧ୍ୟ ନାମରତ୍ନଗୀତାରେ କୁହାଯାଇଅଛି । (୨୭ଶ ଅଧ୍ୟାୟ)

ପ୍ରକୃତରେ କହିବାକୁ ଗଲେ କୃଷ୍ଣଙ୍କର ଦ୍ୱାରକା ଯୁବତୀମାନଙ୍କୁ ନେଇ ନିତ୍ୟସ୍ଥଳୀକୁ ଯିବା କୌଣସି ପୁରାଣରେ ବର୍ଣ୍ଣିତ ହୋଇନାହିଁ ।

ପୁଣି ରହସ୍ୟମଞ୍ଜରୀବର୍ଣ୍ଣିତ ମଥୁରାଗମନାନ୍ତର ରାଧାଙ୍କ ସହ କୃଷ୍ଣଙ୍କର ପୁନର୍ମିଳନ ଓ ପୁନଃରାସକ୍ରୀଡ଼ା ବିଷୟରେ ପୁରାଣମାନଙ୍କ ମଧ୍ୟରେ ମତର ଐକ୍ୟ ନାହିଁ । ବ୍ରହ୍ମବୈବର୍ତ୍ତପୁରାଣରେ 'ପ୍ରକୃତିଖଣ୍ଡ ୫୧ ଅଧ୍ୟାୟରେ' ଲିଖିତ ଅଛି,

ଶ୍ରୀ ସୁଦାମା ରାଧାଙ୍କୁ ଅଭିସମ୍ପାତ କଲେ, "ତୁମ୍ଭେ ଗୋପୀରୂପରେ ମର୍ତ୍ତ୍ୟରେ ଜନ୍ମଗ୍ରହଣ କର । ତୁମ୍ଭର କୃଷ୍ଣଙ୍କ ସହ ଶତବର୍ଷବ୍ୟାପୀ ବିଚ୍ଛେଦ ଘଟୁ ।"

"ଭବ ଗୋପୀ ଗୋପକନ୍ୟା ଗୋପୀଭିଃ ସ୍ୱାଭିରେବ ଚ
ତତ୍ର ତେ କୃଷ୍ଣବିଚ୍ଛେଦୋ ଭବିଷ୍ୟତି ଶତଂ ସମାଃ ।"

ଏହି ବିଷୟକୁ ସମର୍ଥନ କରି ୧୦୦ବର୍ଷ ପରେ କୃଷ୍ଣଜନ୍ମ ଖଣ୍ଡର ୧୨୭ ଅଧ୍ୟାୟରେ ପୁରାଣକାର ରାଧାକୃଷ୍ଣଙ୍କର ପୁନର୍ବାର ମିଳନ କରାଇ ଅଛନ୍ତି । ଉଭୟଙ୍କର ବିବାହ ମଧ୍ୟ ୧୨୭ ଅଧ୍ୟାୟରେ ବର୍ଣ୍ଣିତ ହୋଇଅଛି । ୧୨୮ ଅଧ୍ୟାୟରେ ଗୋକୁଳବାସିଙ୍କସହ ରାଧାଙ୍କର ଗୋଲକ ଗମନ ।

ବ୍ରହ୍ମପୁରାଣରେ ମଥୁରାଗମନାନ୍ତର ପୁନର୍ମିଳନ ଉଲ୍ଲେଖ ନାହିଁ ।

ପଦ୍ମପୁରାଣରେ କିନ୍ତୁ ଦନ୍ତବକ୍ରବଧାନନ୍ତର କୃଷ୍ଣଙ୍କର ନନ୍ଦଗୋକୁଳରେ ଗୋପଗୋପୀଙ୍କ ସହ ପୁନର୍ମିଳନର ଓ ପୁନଃରାସକ୍ରୀଡ଼ାର ବର୍ଣ୍ଣନ ଅଛି ।

କାଳିନ୍ଦ୍ୟାଃପୁଳିନେ ରମ୍ୟେ ପୁଣ୍ୟବୃକ୍ଷସମାବୃତେ ।
ଗୋପନାରୀଭିରନିଶଂ କ୍ରୀଡ଼ୟାମାସ କେଶବ ।
ରମ୍ୟକେଳିସୁଖେନୈବ ଗୋପବେଶଧରୋ ହରିଃ
ବଦ୍ଧଃ ପ୍ରେମରସେନାତ୍ର ମାସଦ୍ୱୟମୁବାସ ହ ।

(ପୂଜ୍ୟପାଦ ପୂଜାରୀହାରୀ ଗୋସ୍ୱାମୀ ଗୀତଗୋବିନ୍ଦର ଟୀକାରେ ବସନ୍ତ-ରାସର ସମୟ ନିର୍ଦ୍ଧାରଣ କରିବାରେ ଏକ ଗୁରୁତର ଭ୍ରମ କରିଅଛନ୍ତି । ସେ କହନ୍ତି, ଦନ୍ତବକ୍ର ନାଶ ପରେ ଏହି ପଦ୍ମପୁରାଣୋକ୍ତ ମିଳନରୁ ହିଁ ବସନ୍ତ ରାସୋତ୍ସବର ଉଦ୍ଭବ । କିନ୍ତୁ ଏହା ବ୍ରହ୍ମବୈବର୍ତ୍ତ ପୁରାଣର ପୂର୍ଣ୍ଣ ବିରୋଧୀ । ବସନ୍ତ ରାସୋତ୍ସବ ବକ, ବୃଷ, ପ୍ରଲମ୍ବାଦିଙ୍କ ନାଶର ପୂର୍ବରେ କୃଷ୍ଣଙ୍କ ବାଲ୍ୟାବସ୍ଥାରେହିଁ ହୋଇଥିଲା ।)

✓ଭାଗବତକାର କୁରୁକ୍ଷେତ୍ରରେ ଗୋପଗୋପୀଙ୍କସହ କୃଷ୍ଣଙ୍କର ମିଳନ ହୋଇଥିବାର ଲେଖିଅଛନ୍ତି । କିନ୍ତୁ ସେଠାରେ ରାସଲୀଳା ଘଟିଥିବାର ଉଲ୍ଲେଖ ତହିଁରେ ନାହିଁ । (ଭାଗବତ ୧୦ମ—୮୨ ଅଧ୍ୟାୟ ଦେଖ)

✓ହରିବଂଶ ଉଦ୍‌ବୃଦ୍ଧି ଭବିଷ୍ୟତପର୍ବର ୬୮ଶ ଅଧ୍ୟାୟରେ ନନ୍ଦ ଗୋପା-ଦିଙ୍କସହ କୃଷ୍ଣଙ୍କର ପୁନର୍ମିଳନ ବର୍ଣ୍ଣିତ ହୋଇଅଛି । କିନ୍ତୁ ତହିଁରେ ମଧ୍ୟ ରାସଲୀଳାର ବର୍ଣ୍ଣନ ନାହିଁ ।

*

ରାଧାତନ୍ତ୍ରରେ ଲିଖିତ, ପଦ୍ମିନୀ ରାଧା ନିଜର ରୂପସଦୃଶୀ ଏକ କୃତ୍ରିମ ରାଧା ନିର୍ମାଣ କରିଥିଲେ । ସେ ରାଧା ବୃଷଭାନୁ ଗୃହରେ ସର୍ବଦା ବାସ କରୁଥିଲେ । ବାସ୍ତବରେ ସ୍ୱୟଂ ରାଧାଙ୍କର କୃଷ୍ଣଙ୍କ ସହ ବିରହ ନାହିଁ, କେବଳ କୃତ୍ରିମ ରାଧାଙ୍କର ବିରହଦଶା ଘଟିଅଛି ।

"କ୍ଷଣେ ମୁଁ ଯେ ନ ଛାଡ଼ଇ ରାଧିକାର ସଙ୍ଗ ।

× × ×

ଆଗେ ରାଧା ପଛେ ମୁହିଁ ଲମ୍ପଟଭାବରେ ।
ଏକ ଜୀବ ଭିନ୍ନ ଦିଶି ଯୁଗଳ ଅଙ୍ଗରେ ।"

(ଅଚ୍ୟୁତାନନ୍ଦ ଦାସ)

ପୁଣି ଭାଗବତରେ ମଧ୍ୟ ଉଦ୍ଧବ ମୁଖରୁ ଗୋପୀମାନଙ୍କର ବିରହବାର୍ତ୍ତା ଶ୍ରବଣକଲା କାଳରୁ କୃଷ୍ଣଙ୍କର ବ୍ରଜରେ ପ୍ରାଦୁର୍ଭାବ, ବୃହଦ୍‌ବ୍ରହ୍ମ ପୁରାଣାଦିରେ ନାନାରୂପରେ ବାରମ୍ବାର ବର୍ଣ୍ଣିତ ହୋଇଅଛି । ଯେଉଁ ସମୟରେ ଶ୍ରୀକୃଷ୍ଣ ଆବିର୍ଭୂତ ହୋଇ ବିହାର କରନ୍ତି ସେହି ସମୟରେ ବ୍ରଜବାସିଗଣ ଶ୍ରୀକୃଷ୍ଣଙ୍କ ମଥୁରାଗମନ ସ୍ୱପ୍ନପ୍ରାୟ ଅନୁଭବ କରନ୍ତି ।

ପୁରାଣଜଗତରେ ଏହି ବୈସାଦୃଶ୍ୟ ଦୃଷ୍ଟିରେ କାବ୍ୟର ବସ୍ତୁବିଷୟର ଅଭିନବତା ଯୋଗୁଁ ରହସ୍ୟମଞ୍ଜରୀ କବିଙ୍କ ପ୍ରତି କେହି ଅଭିଯୋଗ ଆଣି-ପାରିବେ ନାହିଁ । ପୁରାଣମାନଙ୍କର ଏହି ବୈସାଦୃଶ୍ୟ, ବୋଧହୁଏ କବିଙ୍କର ଅଭିନବ ବସ୍ତୁବିଷୟର ସଂସ୍ଥାପନର କାରଣ । କବି ମଧ୍ୟ କାବ୍ୟ ଶେଷରେ କହିଅଛନ୍ତି :—

"ରହସ୍ୟମଞ୍ଜରୀ ଏ ବିଚିତ୍ରମୟ ରସ । ଏ ସୁଖ ଜାଣିବ ଯେହୁ ବିବେକ ପୁରୁଷ ।

× × ×

ପାଠମାନେ ଯେବେ ଆନ କରି କହିଆନ୍ତେ ।
ବଡ଼ିମା ଅନନ୍ତ ବୋଲି କମା ଲେଖିଯାନ୍ତେ ।
ବିବେକୀ ବୋଲିବେ ଏ ଗୁପତେ ଥିଲି ରହି ।
ସରସ୍ୱତୀ ଗୁପତେ ଭଣ୍ଡାରେ ଥିଲି ଥୋଇ ।" ଇତ୍ୟାଦି ଇତ୍ୟାଦି ।

(୨୪ଶ ଛାନ୍ଦ, ପଦ ୨୪।୨୫।୨୬।୨୭।୨୮।୨୯)

**ବସ୍ତୁ ତତ୍ତ୍ୱର ନାୟକ, ନାୟିକା-ଙ୍କର ପରିଚୟ ।**

ଶ୍ରୀକୃଷ୍ଣ—ଶ୍ରୀକୃଷ୍ଣ ସ୍ୱୟଂ ଭଗବାନ୍ । ଭଗବତ୍ତ୍ୱରେ ଐଶ୍ୱର୍ଯ୍ୟ ଓ ମାଧୁର୍ଯ୍ୟର ସମନ୍ୱୟ । କୃଷ୍ଣ ଦ୍ୱାରକାରେ ପୂର୍ଣ୍ଣ, ମଥୁରାରେ ପୂର୍ଣ୍ଣତର, ବ୍ରଜରେ ପୂର୍ଣ୍ଣତମ । ବ୍ରହ୍ମବୈବର୍ତ୍ତ :—

ଭଗବାନ୍ ଶ୍ରୀକୃଷ୍ଣ ଅଂଶୀ ବା ଅବତାରୀ । ରାମ, ନୃସିଂହାଦି ଅବତାର । ଅବତାର ତ୍ରିବିଧ :—ଅଂଶାବତାର, ଗୁଣାବତାର ଓ ଶକ୍ତ୍ୟାବେଶାବତାର । (୧) ଅଂଶାବତାର ଦ୍ୱିବିଧ :—ପୁରୁଷାବତାର ଓ ଲୀଳାବତାର । ପୁରୁଷାବତାର, ଯଥା :—କାରଣାର୍ଣ୍ଣବଶାୟୀ, ଗର୍ଭୋଦକଶାୟୀ ଓ କ୍ଷୀରୋଦକଶାୟୀ ନାରାୟଣ । ଲୀଳାବତାର, ଯଥା :—ମତ୍ସ୍ୟ କୂର୍ମାଦି । (୨) ଗୁଣାବତାର, ଯଥା :—ବ୍ରହ୍ମାବିଷ୍ଣ୍ୱାଦି । (୩) ଶକ୍ତ୍ୟାବେଶ ଅବତାର, ଯଥା :—ସନକ, ସନାତନ, ପୃଥୁ, ବ୍ୟାସାଦି । ଭଗବାନଙ୍କର 'ବିଳାସ' ଗଣ ମଧ୍ୟ ଅବତାର ମଧ୍ୟରେ ଗଣ୍ୟ ହୁଏ । 'ବିଳାସ' ପ୍ରାୟ ଭଗବତ୍ତୁଲ୍ୟ ଶକ୍ତିଶାଳୀ ଓ ଅନ୍ୟାନ୍ୟ ଅଂଶାବତାରଠାରୁ ଉତ୍କୃଷ୍ଟ । ବିଳାସ ଯଥା :—ଭଗବାନଙ୍କ ବିଳାସ ନାରାୟଣ, ନାରାୟଣଙ୍କ ବିଳାସ ବାସୁଦେବାଦି । ତନ୍ମଧ୍ୟରୁ ପ୍ରଥମଟି ପ୍ରାଭବ ବିଳାସ ଓ ଦ୍ୱିତୀୟଟି ଅଂଶ ବିଳାସ । 'ପ୍ରକାଶ' କିନ୍ତୁ ବିଳାସ ପରି ଭେଦ ରୂପରେ ଗଣିତ ହୁଏ ନାହିଁ । ଏକରୂପ ଏକ କାଳରେ ନାନାସ୍ଥାନରେ ପ୍ରକଟିତ ହେଲେ ତାକୁ ପ୍ରକାଶ କୁହାଯାଏ । ପ୍ରକାଶ ସ୍ୱୟଂରୂପୀଠାରୁ ସ୍ୱରୂପତଃ ଅଭିନ୍ନ । ସ୍ୱୟଂରୂପୀ ଅନ୍ୟାନ୍ୟପେକ୍ଷୀ । କିନ୍ତୁ ପ୍ରକାଶ ସ୍ୱୟଂରୂପକୁ ଅପେକ୍ଷା କରି ପ୍ରକାଶିତ ହୁଏ । ଭଗବାନଙ୍କ ପ୍ରକାଶ, ଯଥା—ରାସରେ ଓ ମହିଷୀବିବାହାଦିରେ ବହୁରୂପ ହେବ ।

ପରମବ୍ୟୋମନାଥ ନାରାୟଣଙ୍କର ମହାବସ୍ଥ ନାମକ ବିଖ୍ୟାତ ବ୍ୟୂହ ଚତୁଷ୍ଟୟ ମଧ୍ୟରେ ଏହି ବାସୁଦେବ ଆଦିବ୍ୟୂହ ଓ ଚିତ୍ତରେ ଉପାସ୍ୟ, ଯେହେତୁ ଏ ଚିତ୍ତର ଅଧିଷ୍ଠାତ୍ରୀ ଦେବତା ଓ ବିଶୁଦ୍ଧ ସତ୍ତ୍ୱର ଅଧିଷ୍ଠାନ । ଜଳାବରଣସ୍ଥ ବୈକୁଣ୍ଠର ବେଦବତୀପୁରର ଏ ଅଧୀଶ୍ୱର ।

ଦ୍ୱିତୀୟ ବ୍ୟୂହ ସଙ୍କର୍ଷଣ, ବାସୁଦେବଙ୍କର ସ୍ୱାଂଶ ଅର୍ଥାତ୍ ବିଳାସ । ସତ୍ୟଲୋକର ଉପରିଭାଗସ୍ଥ ବିଷ୍ଣୁଲୋକ ଏହାଙ୍କର ଅଧିଷ୍ଠାନ, ଏ ସର୍ବଜୀବ ପ୍ରାଦୁର୍ଭାବର କାରଣ ।

ତୃତୀୟ ବ୍ୟୂହ ପ୍ରଦ୍ୟୁମ୍ନ, ସଙ୍କର୍ଷଣଙ୍କର ବିଳାସମୂର୍ତ୍ତି । ନିତ୍ୟାଖ୍ୟ ଦ୍ୱାରକାପୁର ଏହାଙ୍କର ସ୍ଥଳୀ ।

ଚତୁର୍ଥ ବ୍ୟୂହ ଅନିରୁଦ୍ଧ ପ୍ରଦ୍ୟୁମ୍ନଙ୍କର ବିଳାସ ମୂର୍ତ୍ତି । କ୍ଷୀର ସମୁଦ୍ର ମଧ୍ୟବର୍ତ୍ତୀ ଶ୍ୱେତଦ୍ୱୀପସ୍ଥ ଐରାବତୀପୁରରେ ଅନନ୍ତ ଶଯ୍ୟାରେ ଏ ଶାୟିତ ।

ଏହି ବ୍ୟୂହଚତୁଷ୍ଟୟ ମଧ୍ୟରେ ବାସୁଦେବ ଶ୍ରେଷ୍ଠ ଓ କେହି କେହି ପୁରାଣକାର ଏହାଙ୍କୁ କୃଷ୍ଣାବତାର ବୋଲି ନିର୍ଦ୍ଦେଶ କରିଥାନ୍ତି । ବାସ୍ତବରେ କିନ୍ତୁ ବାସୁଦେବାଦି ଚତୁର୍ବ୍ୟୂହ, କୃଷ୍ଣଙ୍କର ଆବରଣ ଦେବତା । କୃଷ୍ଣଙ୍କର ମାହାତ୍ମ୍ୟ ବ୍ରହ୍ମ ଓ ବାସୁଦେବଙ୍କଠାରୁ ସାତିଶୟ ଏହା ଭଗବଟୀକା ବ୍ରହ୍ମ ସୂତ୍ରରେ ପ୍ରତିପାଦିତ ହୋଇଅଛି ।

କୃଷ୍ଣଚନ୍ଦ୍ରଙ୍କର ବୟସ୍ୟଗଣ ଚତୁର୍ବିଧ:—ସୁହୃତ୍, ସଖା, ପ୍ରିୟସଖା ଓ ପ୍ରିୟନର୍ମ୍ମ ସଖା । ସୁହୃତ୍ଶ୍ରେଣୀର ବୟସ୍ୟମାନଙ୍କ ମଧ୍ୟରୁ ରହସ୍ୟମନ୍ତ୍ରସାରରେ କାହାରି ନାମର ଉଲ୍ଲେଖ ନାହିଁ । ସଖାମାନଙ୍କ ମଧ୍ୟରୁ ଅଛନ୍ତି ବିଶାଳ, ବୃଷଭ, ଦେବପ୍ରସ୍ଥ, କୁମୁଦ (କୁନ୍ଦ) ଓ ବରୁଥ (ରାଧାତନ୍ତ୍ର ଓ ରାଧାକୃଷ୍ଣଗଣୋଦ୍ଦେଶ ଦୀପିକାମତେ ବରୂଥପ, ଆଦିପୁରାଣମତେ ବରୂଥକ) । ଏମାନେ ଶ୍ରୀକୃଷ୍ଣଙ୍କଠାରୁ କନିଷ୍ଠ ଓ ତାଙ୍କ ସେବାରେ ନିରତ । ପ୍ରିୟସଖା ଶ୍ରେଣୀସ୍ଥ ବୟସ୍ୟଗଣ —କିଙ୍କିଣୀ, ସ୍ତୋକକୃଷ୍ଣ, ସୁଦାମ, ବସୁଦାମ; ଏମାନେ ଶ୍ରୀକୃଷ୍ଣଙ୍କ କେଳି-କୌତୁକାଦିରେ ସାହାଯ୍ୟକାରୀ, ଶାନ୍ତସ୍ୱଭାବ ଓ କୃଷ୍ଣଙ୍କର ପ୍ରାଣୋପମ । ପ୍ରିୟନର୍ମ୍ମ ସଖା ଅର୍ଜ୍ଜୁନ ଓ ସୁବଳ । ରହସ୍ୟମନ୍ତ୍ରସାରକାର ୧୪ଶ ଛନ୍ଦର ୧୭ ପଦୋକ୍ତ ଜୟନ୍ତକକୁ ପ୍ରିୟନର୍ମ୍ମସଖା ବସନ୍ତକରୂପେ ଗ୍ରହଣ କଲି ପରି ବୋଧ ହୁଏ, କାରଣ ଜୟନ୍ତକ ନାମଧେୟ କୃଷ୍ଣଙ୍କର କୌଣସି ବୟସ୍ୟ ଥିବାର ଅମ୍ଭେ ନାନା ବୈଷ୍ଣବଗ୍ରନ୍ଥ ଦେଖିଛୁଁ କିନ୍ତୁ କୌଣସିଥିରେ ପାଇନାହୁଁ ।

ଇଚ୍ଛାମୟ ଭଗବାନ ଶ୍ରୀକୃଷ୍ଣ ପ୍ରଥମତଃ ନିତ୍ୟବୃନ୍ଦାବନରେ ଏକାକୀ ବାସ କରୁଥିଲେ । ତାହା ପରେ ସ୍ୱଇଚ୍ଛାରେ ଲୀଳା-

**ରାଧା ।** କରିଣେଚ୍ଛୁକ ହୋଇ ନିଜେ ଦ୍ୱିଧାରୂପ ହେଲେ । ତାଙ୍କ ଦକ୍ଷିଣାଙ୍ଗ ହେଲ ଶ୍ରୀକୃଷ୍ଣ, ବାମାଙ୍ଗ ରାଧା ।

କୃଷ୍ଣଙ୍କର ଲୋମକୂପରୁ ଗୋପୀମାନଙ୍କର ଜନ୍ମ ହେଲା ପରେ ରାଧାଙ୍କର

ଲୋମକୂପରୁ ଗୋପୀମାନେ ଜାତ ହୋଇଥିଲେ । ରାଧାଙ୍କର ବାମାଙ୍ଗରୁ ଜାତ ହେଲେ ମହାଲକ୍ଷ୍ମୀ, ଯେଉଁ ମହାଲକ୍ଷ୍ମୀ ବୈକୁଣ୍ଠବାସୀ—ମର୍ତ୍ତ୍ୟରେ ଦ୍ୱାରକା-ବାସୀ ଚତୁର୍ଭୁଜ କୃଷ୍ଣଙ୍କର ରୁକ୍ମଣୀ ନାମଧାରଣୀ ପତ୍ନୀ । ଭଗବାନଙ୍କ ଶକ୍ତି ପ୍ରଧାନତଃ ତିନୋଟି (୧) ପରା (୨) କ୍ଷେତ୍ରଜ୍ଞା ବା ଜୀବଶକ୍ତି (୩) ଅପରା ବା ମାୟାଶକ୍ତି । ତନ୍ମଧ୍ୟରୁ ପରାଶକ୍ତି ତ୍ରିବିଧ—ହ୍ଲାଦିନୀ, ସନ୍ଧିନୀ, ସମ୍ବିତ । ଭଗବାନ ହ୍ଲାଦ'ତ୍ମା ହେଲେହେଁ ଯେଉଁ ଶକ୍ତିଦ୍ୱାରା ହ୍ଲାଦବାନ୍ ହୋଇ ଜୀବକୁ ଆହ୍ଲାଦ ପ୍ରଦାନ କରନ୍ତି ତାହା ହ୍ଲାଦିନୀଶକ୍ତି ନାମରେ ଖ୍ୟାତ । ଯେଉଁ ଶକ୍ତି ଦ୍ୱାରା ଭଗବାନ ସଦାତ୍ମା ହୋଇ ସୁଦ୍ଧା ସତ୍ତା ଧାରଣ କରନ୍ତି ଓ ଜୀବକୁ ସତ୍ତା ପ୍ରଦାନ କରନ୍ତି ତାହା ସନ୍ଧିନୀ ଶକ୍ତି । ଭଗବାନ ନିଜେ ସମ୍ବିଦାତ୍ମା ହୋଇ ସୁଦ୍ଧା ଯେଉଁ ଶକ୍ତିବଳରେ ନିଜେ ଜ୍ଞାନବାନ୍ ହୁଅନ୍ତି ଓ ଜୀବକୁ ଜ୍ଞାନବାନ କରାନ୍ତି ତାହା ସମ୍ବିତ୍ । ହ୍ଲାଦିନୀ ଶକ୍ତିର ସାର ପ୍ରେମ,ପ୍ରେମର ସାର ଭାବ ଓ ଭାବର ଚରମ ମହାଭାବ । ମାଦନାଖ୍ୟା—ମହାଭାବସ୍ୱରୂପିଣୀ—ରାଧିକା ଓ ମୋହନାଖ୍ୟା—ମହାଭାବ ସ୍ୱରୂପିଣୀ ବ୍ରଜଦେବୀଗଣ (ମହାଭାବର ମାଦନ ଓ ମୋହନ ନାମକ ଯେଉଁ ଦୁଇଟି ଅବସ୍ଥା ଅଛି ତନ୍ମଧ୍ୟରୁ ମାଦନାବସ୍ଥା ଶ୍ରେଷ୍ଠତର) ।

ରାଧା ଅଂଶିନୀ ବା ଅବତାରଣୀ । ନାରାୟଣକାନ୍ତା ମହାଲକ୍ଷ୍ମୀ ଦେବୀ ଶ୍ରୀ ରାଧିକାଙ୍କର ବିଳାସ ଓ ଅନ୍ୟାନ୍ୟ ଲକ୍ଷ୍ମୀଗଣ ରାଧିକାବିଳାସ ମହାଲକ୍ଷ୍ମୀଙ୍କର ଅଂଶ । ଲୀଳା ଲାଗି ରାଧା ମଧ୍ୟ ଶ୍ରୀକୃଷ୍ଣଙ୍କ ଅନୁରୂପ ବହୁରୂପରେ ପ୍ରକାଶ ହୋଇଥିଲେ; ତାଙ୍କର ସେହି ବହୁରୂପହିଁ ଗୋପୀଗଣ । ରାଧାଙ୍କର ମନ୍ତ୍ରସ୍ଥ-ଶ୍ରେଣୀସ୍ଥା ବୟସ୍ୟାମାନଙ୍କୁ ଛାଡ଼ିଦେଲେ ଅନ୍ୟାନ୍ୟ ସକଳ ବୟସ୍ୟାମାନେ ପାଞ୍ଚ ଶ୍ରେଣୀର; (୧) ସଖୀ (୨) ନିତ୍ୟସଖୀ (୩) ପ୍ରାଣସଖୀ (୪) ପ୍ରିୟସଖୀ (୫) ପରପ୍ରେଷ୍ଠସଖୀ । ରହସ୍ୟମନ୍ତ୍ରସ୍ଥ ଜନିତ ଶ୍ରୀରାଧାଙ୍କର ଯେଉଁ ବୟସ୍ୟା-ମାନଙ୍କର ନାମ ଉଲ୍ଲେଖ କରାଯାଇଅଛନ୍ତି, ସେ ସକଳଙ୍କର ନାମ ନିମ୍ନ-ଲିଖିତ କୌଣସି ଏକ ଖଣ୍ଡ ବୈଷ୍ଣବ ଗ୍ରନ୍ଥରେ (୧-ପୁରୁଷୋତ୍ତମ ତାପନୀ, ୨-ରାଧାତନ୍ତ୍ର, ୩-ପଦ୍ମପୁରାଣ, ୪-ଉଜ୍ଜ୍ୱଳନୀଳମଣି, ୫-ଶ୍ରୀରାଧାକୃଷ୍ଣ

ଗଣୋଦ୍ଦେଶଦୀପିକା) ପୂର୍ଣ୍ଣରୂପେ ମିଳେନାହିଁ । କବି ଯେ ବହୁଶାସ୍ତ୍ରଦର୍ଶୀ ଥିଲେ ଏହା ତାହାର ପରିଚୟସୂଚକ । ବୈଷ୍ଣବ ଶାସ୍ତ୍ରମତେ କବିଙ୍କ ଲବଙ୍ଗ-ମଞ୍ଜରୀ ଶ୍ରୀରାଧାଙ୍କ ମଞ୍ଜରୀ ଶ୍ରେଣୀସ୍ଥା ଜଣେ ଚତୁରା, ମଦନା ଓ ମାଧବୀ ଶ୍ରୀରାଧାଙ୍କ ପ୍ରିୟସଖୀ ଓ ଲଳିତା ଶ୍ରୀରାଧାଙ୍କ ପରମଶ୍ରେଷ୍ଠସଖୀ । କବିଙ୍କ "ବୀଣାକାରେଣୀ" ସମ୍ଭବତଃ ଶ୍ରୀରାଧାଙ୍କ ପ୍ରିୟମ୍ବଦା ଓ ପ୍ରେମାବତୀ ନାମକ ସଖୀଦ୍ୱୟ (ପୁରୁଷୋ-ତ୍ତମ ତାପିନୀ) । କବି ଯେଉଁମାନଙ୍କୁ ମୁନିସିଦ୍ଧାଙ୍ଗୀ ବୋଲି ଅଭିହିତ କରି-ଅଛନ୍ତି, ସେମାନେ ପୂର୍ବଜନ୍ମରେ ତ୍ରେତାର ଦଣ୍ଡକବାସୀ ଋଷିବୃନ୍ଦ, ରାମଙ୍କ ରୂପରେ ମୁଗ୍‌ଧ ହୋଇ ଅଙ୍ଗସଙ୍ଗ ବାଞ୍ଛା କରିବାରୁ ଗୋପିକାରୂପେ ଜାତ ହୋଇଥିଲେ । ଶ୍ରୁତି ସ୍ୱରୂପୀ ରୂପେ କବି ଯେଉଁମାନଙ୍କୁ କହିଅଛନ୍ତି ସେମାନେ ଗୋପୀରୂପଧାରୀ ଉପନିଷଦମଣ୍ଡଳୀ । ଚନ୍ଦ୍ରାବଳୀ, ଚନ୍ଦ୍ରରେଖା, ଚନ୍ଦ୍ରାବତୀ, ଶ୍ରୀସ୍ଥା, ମଧୁମତୀ, ଶଶିରେଖା, ହରିପ୍ରିୟା, ବିମଳା, ମାଧବୀ, ବୃନ୍ଦାବତୀ, ଉନ୍ମଦା, ସାଧବୀ, ପ୍ରସନ୍ନା ଓ ପୂର୍ବୋକ୍ତ ଗୋପୀଗଣ ରାସରେ ଯୂଥେଶ୍ୱରୀ, ରାସଲୀଳା ସଖୀକର ଓ ସତତ ଶ୍ରୀରାଧାଙ୍କ ସେବାପରାୟଣା * । କେତେବେଳେ ବୃନ୍ଦା କେତେବେଳେ କାତ୍ୟାୟନୀ ଓ ପୁଣି କେତେବେଳେ ଅବା ବିଶାଖା ଦୂତୀ ନାମରେ ଅଭିହିତା ହୁଅନ୍ତି । ଗୋପୀମାନଙ୍କ ବିଷୟବିଷୟ ପ୍ରେମପଞ୍ଚାମୃତର ମୁଖବନ୍ଧ ଦେଖ ।

ଲଳିତାଦି ସଖୀ ଓ ମଞ୍ଜରୀ ଏବଂ ସେମାନଙ୍କର ଗଣ—ଏମାନେ ରାଧାଙ୍କର ସ୍ୱରୂପ ବା ବିଳାସବଶତଃ ପୃଥକ, ବସ୍ତୁତଃ ଏକ ।

---

* ରାଧାକୃଷ୍ଣଗଣୋଦ୍ଦେଶଦୀପିକା, ଉଜ୍ଜ୍ୱଳନୀଳମଣି, ପୁରୁଷୋତ୍ତମତାପିନୀ, ପଦ୍ମପୁରାଣାଦିରେ ଯୂଥେଶ୍ୱରୀମାନଙ୍କର ନାମର ବୈସାଦୃଶ୍ୟ ଦୃଷ୍ଟିରେ ଓ କବିଙ୍କ ଯୂଥେଶ୍ୱରୀମାନଙ୍କର ନାମ ନିର୍ଦ୍ଦେଶର ବିସ୍ମରଣାସ୍ଥଳେ ଆମ୍ଭେ କୌଣସି ସିଦ୍ଧାନ୍ତରେ ଉପନୀତ ହୋଇ ନ ପାରି କବି କଥିତ ସଖୀମାନଙ୍କୁ ଆପାତତଃ ଯୂଥେଶ୍ୱରୀରୂପେ ଗ୍ରହଣ କରିବାରେ ବାଧ୍ୟ ହେଲୁଁ ।

**ଅଷ୍ଟପାଟରାଣୀ ।**

ଦ୍ୱାରକାବିହାରୀ ଶ୍ରୀକୃଷ୍ଣଙ୍କର ଅଷ୍ଟମହିଷୀ । (୧) ରୁକ୍ମିଣୀ (ମହାଲକ୍ଷ୍ମୀ) (୨) ମିତ୍ରବିନ୍ଦା (ସୂର୍ଯ୍ୟପତ୍ନୀ-କଳାସମ୍ଭୂତା) (୩) ସୁନନ୍ଦା (ସରସ୍ୱତୀ) (୪) ସାତ୍ରାଜିତୀ ବା ସତ୍ୟଭାମା (ବସୁନ୍ଧରାବତାର) (୫) ନାଗ୍ନଜିତୀ (ସାବିତ୍ରୀ ବା ଦେବମାତା) (୬) ସୁଶୀଳା (ସ୍ୱାହାଂଶେ ଜାତା) (୭) ଜାମ୍ବବତୀ [ଦୁର୍ଗାର୍ଦ୍ଧାଂଶେ ଜାତା] (୮) ଲକ୍ଷ୍ମଣା [ତୁଳସୀ ଅର୍ଦ୍ଧାଂଶେ ଜାତା] ବ୍ରହ୍ମବୈବର୍ତ୍ତ—

ଏମାନେ ସମସ୍ତେ ରାଜପୁତ୍ରୀ ରାଜସିକକନ୍ୟା, ସତ୍ତ୍ୱମୟୀ ନୁହନ୍ତି । ଏମାନଙ୍କଠାରୁ ରାଧା ଓ ଗୋପୀକାମାନଙ୍କର ଶ୍ରେଷ୍ଠତ୍ୱ ପ୍ରତିପାଦନ କରିବା ହିଁ ରହସ୍ୟମଞ୍ଜରୀ ଗ୍ରନ୍ଥର ଉଦ୍ଦେଶ୍ୟ—କବି ତାହା କିପରି କ୍ରମଶଃ ସମ୍ପାଦନ କରିଅଛନ୍ତି, ଆମ୍ଭେ ସଂକ୍ଷେପରେ ନିମ୍ନରେ ଦେଖାଉଅଛୁଁ ।

**ଗ୍ରନ୍ଥର ସଂକ୍ଷିପ୍ତ ସୂଚନା ।**

ଗ୍ରନ୍ଥର ପ୍ରଥମ ଛାନ୍ଦରେ ଜଗନ୍ନାଥ ଦେବଙ୍କ ଅଧିଷ୍ଠାନାଦି ନିରୂପଣ ତଦୀୟ ବିରହ ବର୍ଣ୍ଣନ ଓ କବିତାସ୍ଫୁରଣ ନିମନ୍ତେ ଜଗନ୍ନାଥ ଓ ସରସ୍ୱତୀଙ୍କ ସ୍ତୁତି ଅନ୍ତେ କବି ଦ୍ୱିତୀୟ-ଛାନ୍ଦରେ ଦ୍ୱାରବତୀବିହାରୀ ଶ୍ରୀକୃଷ୍ଣଙ୍କର ଶାରୀରିକ ଓ ମାନସିକ ଅବସାଦ ଦର୍ଶନେ ତଦୀୟ ଭକ୍ତ ଓ ପତ୍ନୀକୁଳର ଆତଙ୍କ ବର୍ଣ୍ଣନ କରି ଶେଷରେ ପାଟରାଣୀ ଜ୍ୟେଷ୍ଠା ଓ ଶ୍ରେଷ୍ଠା ରୁକ୍ମିଣୀଙ୍କଦ୍ୱାରା କୃଷ୍ଣଙ୍କୁ ତଦୀୟ ଅବସାଦର କାରଣ ଜିଜ୍ଞାସା କରାଇଅଛନ୍ତି । ତୃତୀୟ ଛାନ୍ଦରେ ଶ୍ରୀକୃଷ୍ଣ ତାଙ୍କର ପ୍ରାଣପ୍ରିୟାଙ୍କ ଅଭାବକୁ ଅବସାଦର କାରଣ ବୋଲି ନିର୍ଦ୍ଦେଶ କରନ୍ତେ, କୃଷ୍ଣପତ୍ନୀମାନଙ୍କର ଯୁଗପତ୍ ବିସ୍ମୟ ଓ ବିଷାଦ ବର୍ଣ୍ଣନ କରି କବି ଶ୍ରୀକୃଷ୍ଣଙ୍କ ମୁଖରେ ଅନ୍ୟ ଏକ ଅବସରରେ ଅଷ୍ଟପାଟରାଣୀ-ମାନଙ୍କୁ ସମବେତ କରାଇ ନିଗୂଢ଼ତତ୍ତ୍ୱ ଶ୍ରବଣ ନିମିତ୍ତ ରୁକ୍ମିଣୀଙ୍କୁ ଆଦିଷ୍ଟ କରାଇ ଅଛନ୍ତି । ଚତୁର୍ଥ ଛାନ୍ଦରେ ପତ୍ନୀକୁଳଦ୍ୱାରା ନିଗୂଢ଼ ଶ୍ରବଣ ନିମନ୍ତେ କୃଷ୍ଣଙ୍କୁ ସକରୁଣ ସ୍ତୁତି । ପଞ୍ଚମ ଛାନ୍ଦରେ କୃଷ୍ଣଙ୍କଦ୍ୱାରା ଗୋପଲୀଳା କଥନର ଅବତାରଣା ଏବଂ ରାଧା ଓ ଦୂତୀ ପ୍ରଶସ୍ତି । ଷଷ୍ଠ ଛାନ୍ଦରେ କୃଷ୍ଣଙ୍କଦ୍ୱାରା ଗୋପିକା ପ୍ରେମଲକ୍ଷଣ ବର୍ଣ୍ଣନ ଓ ଅନ୍ୟାନ୍ୟ ପ୍ରେମୋପରି ଗୋପୀପ୍ରେମର ମାହାତ୍ମ୍ୟ ପ୍ରଖ୍ୟାପନ ।

"ଏମନ୍ତ ସେବାକୁ କୋଟି ମୁକ୍ତ ଦେଇପାର
ବିନା ଗୋପୀଭାବେ ଭକ୍ତି ଦେଇ ତ ନ ପାର"

୭ମ ଛାନ୍ଦରେ କାତରୋକ୍ତି ଜାମ୍ବବତୀଙ୍କର ରାଧାରୂପର ବିଦ୍ରୂପାତ୍ମକ ଅସମ୍ଭାବ୍ୟ ବର୍ଣ୍ଣନ ଓ କୃଷ୍ଣଚନ୍ଦ୍ରଙ୍କଦ୍ୱାରା ତଦ୍‌ବର୍ଣ୍ଣିତ ରାଧାରୂପର ଆପାତତଃ ଅସମ୍ଭାବ୍ୟତାର ସମର୍ଥନ ଏବଂ ମାନମୟୀମାନଙ୍କର ମାନଶାନ୍ତିର ଚିତ୍ର ପ୍ରଦାନ କରି କବି ୮ମ ଛାନ୍ଦରେ କୃଷ୍ଣ ମୁଖରେ ଗୋପଲୀଳା ଓ ରାଧାଜନ୍ମର ମୂଳ-କାରଣ ବୁଝାଇଅଛନ୍ତି, ଯଥା:—ନିତ୍ୟସ୍ଥଳରେ କମ୍ବୁରବ ଶୁଣି ଅଙ୍ଗସଙ୍ଗ ବେଳେ ରାଧାଙ୍କର ଚିତ୍ତବିକ୍ଷେପ ଯୋଗୁଁ ନିତ୍ୟକୃଷ୍ଣଙ୍କର ତାଙ୍କୁ ଅଭିଶାପ ଓ ପରେ ରାଧାଙ୍କ ଅନୁନୟ ଓ ବିନୟରେ ନିମ୍ନଲିଖିତରୂପେ ଶାପର ସମାଧାନ; କମ୍ବୁ ହେବ ଚନ୍ଦ୍ରସେଣା, ରାଧା ହେବେ ତାର ନାମତଃ ଭାର୍ଯ୍ୟା, ନିତ୍ୟକ୍ଷେତ୍ର ହେବ ବୃନ୍ଦାବନ, ଗୋପାଳମାନେ କୃଷ୍ଣଙ୍କର ଅଂଶ, କୃଷ୍ଣପ୍ରେୟସୀମାନଙ୍କର ନପୁଂସକ ଭର୍ତ୍ତା । ନବମ ଛାନ୍ଦରେ ଗୋପର ବିରହାକୁଳା ରାଧାଙ୍କୁ ଦୂତୀଙ୍କର ବିରହନାଶ ଉପାୟ କଥନ । ଦୂତୀକା-ମନ୍ତ୍ରଣାରେ ଗୋପାଙ୍ଗନାମାନଙ୍କର ସ୍ୱଅଙ୍ଗରୁ ଦଶମନ୍ତ୍ରନାସ୍ତିକାଜନନ । ସେମାନଙ୍କ ଗାୟେଣୀରୂପେ ଦ୍ୱାରବତୀ ଗମନ କରି ଆତ୍ମ ସଂଗୋପନ-ପୂର୍ବକ ଦ୍ୱାରକାରେ କୃଷ୍ଣ ଓ ତତ୍ପତ୍ନୀଙ୍କ ସମ୍ମୁଖେ ନୃତ୍ୟଗୀତ ଛଳରେ କୃଷ୍ଣ ବିରହାକୁଳ ଗୋପି ଓ ରାଧାପ୍ରମୁଖା ଗୋପିକାମାନଙ୍କର ସବିସ୍ତର କରୁଣ-କଥନ । ଦଶମ, ଏକାଦଶ ଓ ଦ୍ୱାଦଶ ଛାନ୍ଦରେ ରାଧାଙ୍କର ଦାରୁଣ ବିରହର ବର୍ଣ୍ଣନ । ତ୍ରୟୋଦଶ ଛାନ୍ଦରେ ଗାୟେଣୀମାନଙ୍କ ନୃତ୍ୟଗୀତଭିର କୃଷ୍ଣପତ୍ନୀ-ମାନଙ୍କର ରାଧା ଓ ଗୋପିକାମାନଙ୍କ ରୂପ ଓ ଗୁଣହେତୁକ ଶ୍ରେଷ୍ଠତା ବିଷୟରେ ସନ୍ଦେହ ବିମୋଚନ ଓ ନିଜର ଖର୍ବତାଜ୍ଞାନ । ଚତୁର୍ଦ୍ଦଶ ଛାନ୍ଦରେ ଦ୍ୱାରବତୀରୁ ସପତ୍ନୀକ କୃଷ୍ଣଙ୍କର ମର୍ତ୍ତ୍ୟବୃନ୍ଦାବନକୁ ଗରୁଡ଼ ପୃଷ୍ଠରେ ଆଗମନ ଏବଂ ସନ୍ଦରାଧା ପତ୍ନୀମାନଙ୍କର ପୂର୍ଣ୍ଣ ସନ୍ଦେହ ବିମୋଚନ ଓ ରାଧାପ୍ରେମର ମାହାତ୍ମ୍ୟ ପ୍ରତିପାଦନ ନିମନ୍ତେ ପୁଣି ବିଚାର ଆୟୋଜନ । ୧୫ଶ ଛାନ୍ଦରେ ରାଧା ସହ କେଳି, ୧୬ଶ ଛାନ୍ଦରେ ଗୋପୀମାନଙ୍କର ସମାବେଶ, ୧୭ଶ ଛାନ୍ଦରେ ପାଟବଂଶୀଙ୍କ ଗରୁଡ଼ପୃଷ୍ଠରୁ ରାସ ସମ୍ଭାର ଦେଖି ଯୁଗପତ୍ ବିସ୍ମୟ,

ଅନୁରାଗ ଓ ଭକ୍ତି ବର୍ଣ୍ଣନ କରି କବି ଊନବିଂଶ ଛାନ୍ଦରେ ରାସଲୀଳାର —ଏକକୃଷ୍ଣଙ୍କର ବହୁକୃଷ୍ଣତ୍ୱରେ ପରିଣତି ଓ ପ୍ରତ୍ୟେକ ଗୋପିକା ସହ ବିବିଧ ଲୀଳା ବର୍ଣ୍ଣନା କରିଅଛନ୍ତି । ବିଂଶ ଛାନ୍ଦରେ ବିମୋହିତ-ସନ୍ଦେହା ଚୂର୍ଣ୍ଣିଦର୍ପା ରାଜର୍ଷିକ କୃଷ୍ଣପ୍ରେୟସୀମାନଙ୍କର ରାଧାଦି ଗୋପବାଳାଙ୍କ ସହ ସାକ୍ଷାତ ଓ ସେମାନଙ୍କ ମଧ୍ୟରେ ମର୍ଯ୍ୟାଦାନୁଯାୟୀ କଥୋପକଥନ, ରୁକ୍ମିଣୀଙ୍କ ପ୍ରତି ବିଶେଷତଃ ରାଧାଙ୍କର ଶୋଭନଉପଦେଶ ଓ ଆତ୍ମ-ନିବେଦନାନ୍ତେ କବି ସେମାନଙ୍କୁ କୃଷ୍ଣଙ୍କ ସହ ଦ୍ୱାରବତୀକୁ ଫେରାଇ ଆଣି ମୂଳସ୍ଥାନ ଦର୍ଶନ ନିମନ୍ତେ କୃଷ୍ଣଙ୍କୁ ରୁକ୍ମିଣୀଙ୍କ ସହ ୨୧ଶ ଛାନ୍ଦରେ ଗରୁଡ଼ ପୃଷ୍ଠରେ ପ୍ରେରଣ କରି ଅଛନ୍ତି । ୨୨ଶ ଛାନ୍ଦରେ ନାନା ଦେବଲୋକ, ବିଷ୍ଣୁଙ୍କର ବିଭିନ୍ନ ବ୍ୟୂହାଦିର ବର୍ଣ୍ଣନା ଓ ସେହି ପଥରେ କୃଷ୍ଣ ଓ କୃଷ୍ଣ-ପ୍ରେୟସୀଙ୍କର ଗମନ । ୨୩ଶ ଛାନ୍ଦରେ କୃଷ୍ଣ ରୁକ୍ମିଣୀଙ୍କର ଗୋଲୋକ ଲୋକାନ୍ତେ ତ୍ରିପୁରାଙ୍କ ସହ ସାକ୍ଷାତ ଓ ନିତ୍ୟଧାମ ଦର୍ଶନ ନିମିତ୍ତ ଅନୁନୟ । ତ୍ରିପୁରାଙ୍କର ଅସମ୍ମତି ଓ ନିତ୍ୟଦର୍ଶନ ନିମନ୍ତେ ଶ୍ରୀଗୁରୁଚରଣ ସେବାରୂପ ଉପାୟାନ୍ତର କଥନ । ତତ୍ପରେ ରୁକ୍ମିଣୀଙ୍କୁ ମନ୍ତ୍ରସନ୍ନ୍ୟାଦି ପ୍ରଦାନ ନିମିତ୍ତ କୃଷ୍ଣଙ୍କଦ୍ୱାରା ତ୍ରିପୁରାଙ୍କୁ ସ୍ତୁତି, ତ୍ରିପୁରା ମନ୍ତ୍ରସନ୍ତ୍ରଭେଦ କୃଷ୍ଣଚନ୍ଦ୍ରଙ୍କୁ ପ୍ରଦାନ କରି କହିଲେ—ଏ ମନ୍ତ୍ର ଗ୍ରହଣ କରି ରୁକ୍ମିଣୀ ସିଦ୍ଧିଲାଭ କରିବେ, କାରଣ:—

ମର୍ତ୍ତ୍ୟ ଗୋପୀ ରାଧାଙ୍କୁ ଏ ଅଛନ୍ତି ରୁନ୍ଧି,
ମନ୍ତ୍ରସିଦ୍ଧ-କରିବେ ସେ ରୂପକୁ ଧ୍ୟାୟି ।

ମନ୍ତ୍ରଦାନକରି ତ୍ରିପୁରାଙ୍କର ଅନ୍ତର୍ଦ୍ଧାନ ପରେ କବି ୨୪ଶ ଛାନ୍ଦରେ ଗୋଲୋକଲୋକାନ୍ତରୁ କୃଷ୍ଣ, କୃଷ୍ଣପତ୍ନୀଙ୍କୁ ଫେରାଇ ଆଣିଥିଲେ ଓ କୃଷ୍ଣ-ବିରହାକୁଳା ସତ୍ୟଭାମାଙ୍କର କଷଣ ଦୂର କରି ଶେଷରେ ତାଙ୍କୁ ମଧ୍ୟ ରୁକ୍ମିଣୀଙ୍କ ସହ ମନ୍ତ୍ରସନ୍ନ୍ୟାଦିରୂପ ଦିବ୍ୟଧନରେ ଭାଗିନୀ କରାଇଅଛନ୍ତି । ସ୍ୱଗଣ ସହ ରାଧା ଯେ ରାଜର୍ଷିକମାନଙ୍କଠାରୁ ବହୁ ଊର୍ଦ୍ଧ୍ୱରେ ତାହା ଗ୍ରନ୍ଥର କଥାବସ୍ତୁର ପ୍ରସାର ଘଟଣା ସଙ୍ଗେ ଯେପରି କି ପ୍ରଦର୍ଶିତ ଓ ସମର୍ଥିତ ହୋଇ ଯାଇଅଛି ।

*

ରହସ୍ୟମଞ୍ଜରୀର କଥାବସ୍ତୁ ସ୍ଥୂଳତଃ ଉପସ୍ଥାପିତ କରି ଆମ୍ଭେ ବର୍ତ୍ତମାନ କଥାବସ୍ତୁର ମୌଳିକତ୍ୱାଦର ବିଚାରରେ ପ୍ରବୃତ୍ତ ହେଉଅଛୁ । ଭାଗବତ, ବ୍ରହ୍ମ, ହରିବଂଶ ଓ ବିଷ୍ଣୁ ପୁରାଣମାନଙ୍କରେ ରାଧାଙ୍କ ନାମୋଲ୍ଲେଖ ନାହିଁ, କିନ୍ତୁ କେବଳ ଗୋପୀମାନଙ୍କର ଶ୍ରେଷ୍ଠତ୍ୱ ପ୍ରତିପାଦିତ ହୋଇଅଛି । ଭାଗବତରେ ବ୍ରହ୍ମାଙ୍କ ସ୍ତୁତି ଓ ଉଦ୍ଧବଙ୍କ ବାକ୍ୟ ଦ୍ରଷ୍ଟବ୍ୟ । ବ୍ରହ୍ମବୈବର୍ତ୍ତ, ପଦ୍ମ, ବ୍ରହ୍ମାଣ୍ଡ, ଆଦି ଓ ଦେବୀଭାଗବତ ପ୍ରଭୃତି ପୁରାଣରେ, ଶାଣ୍ଡିଲ୍ୟ, ନାରଦସୂତ୍ର ଓ ତାପିନୀ ପ୍ରଭୃତି ପ୍ରାମାଣିକ ଗ୍ରନ୍ଥରେ ଗୋପୀମାନଙ୍କର ଶ୍ରେଷ୍ଠତ୍ୱ ଓ ରାଧାଙ୍କର ସର୍ବଶ୍ରେଷ୍ଠତ୍ୱ ଉଭୟ କଥିତ ଅଛି । ଏହି ପୁରାଣମାନ ଓ ଭକ୍ତିଗ୍ରନ୍ଥମାନ ପାଠକରି କବି ଦେବଦୁର୍ଲ୍ଲଭ ଗୋପିକା ତଥା ରାଧାପ୍ରେମର ମାହାତ୍ମ୍ୟ ବର୍ଣ୍ଣନରେ ପ୍ରବୃତ୍ତ ହୋଇ ଅଛନ୍ତି । ସେ ନିଜେ ରହସ୍ୟମଞ୍ଜରୀର ୫ମ ଛାନ୍ଦ ୧୭ଶ ପଦରେ କହିଅଛନ୍ତି ।

**କଥାବସ୍ତୁର ମୌଳିକତ୍ୱ ।**

* "ଗୋପୀ ପ୍ରେମ ମାହାତ୍ମ୍ୟନାମେ ପାଠ ।
ଆଦିପୁରାଣ ବାଣୀ ମଧ୍ୟେ ଶ୍ରେଷ୍ଠ ।"

ତୀର୍ଥ, ବ୍ରତ, ଯଜ୍ଞ, ଦାନ, ତପ ଓ ଜ୍ଞାନର ଉପରେ ଭକ୍ତିର ସ୍ଥାନ ଏବଂ ଭକ୍ତି ମଧ୍ୟରେ ପ୍ରୀତିଭକ୍ତିର ଶ୍ରେଷ୍ଠତା ପ୍ରତିପାଦନହିଁ ଦେବଦୁର୍ଲ୍ଲଭଙ୍କ କବିତାର ଛତ୍ରେ ଛତ୍ରେ ପ୍ରକାଶମାନ । ପ୍ରୀତି ଭକ୍ତିର ମୂଳହିଁ ଗୋପିକାବୃନ୍ଦ ଓ ସେମାନଙ୍କ ପ୍ରସାଦରେ କେବଳ ପ୍ରୀତିଭକ୍ତି ଲଭ୍ୟ ।

କାତ୍ୟେର୍ଷ୍ୟା ଜମ୍ବୁବତୀ ଯେତେବେଳେ କୃଷ୍ଣଙ୍କୁ ବିଦ୍ରୂପ କରି ରାଧାରୂପର ବିଦ୍ରୂପାତ୍ମକ ଅସମ୍ଭାବ୍ୟ ବର୍ଣ୍ଣନା କଲେ, ସେତେବେଳେ କୃଷ୍ଣ ରାଧାରୂପର ସେହି ଆପାତଃ ଅସମ୍ଭାବ୍ୟତାକୁ ସମର୍ଥନ କରି ନୃତ୍ୟରେ ନିଜର ଦଶଭୁଜତ୍ୱ ଓ କମ୍ବୁର ଚନ୍ଦ୍ରସେଣୀ ରୂପରେ ଜନ୍ମହେବା ଆଦି କଥା ମାନମୟୀ

**କୃଷ୍ଣଙ୍କ ଦଶଭୁଜତ୍ୱ**

* (ଗୌଡ଼ୀୟ ଷଡ଼ ଗୋସ୍ୱାମୀଙ୍କ ଗ୍ରନ୍ଥମାନଙ୍କ ନାମ ଉଲ୍ଲେଖ ନ କରି ଆଦି ପୁରାଣର ନାମୋଲ୍ଲେଖ କରିବା କବିଙ୍କ ପ୍ରାଚୀନତାର ଅନ୍ୟତମ ନିଦର୍ଶନ)

ରୁକ୍ମଣୀଙ୍କୁ କହୁଥିବାର କବି ୭୮ମ ଛାନ୍ଦରେ ବର୍ଣ୍ଣନା କରି ଅଛନ୍ତି । କୃଷ୍ଣଙ୍କର ଦଶଭୁଜକୁ ବର୍ଣ୍ଣନସହ ଚନ୍ଦ୍ରସେଣା ଜନ୍ମର ଅଭିନବ ଉପାଖ୍ୟାନ କବିଙ୍କର ଭାବନା ପ୍ରସୂତ । (ଗ) ପୋଥିର ଲେଖାନୁସାରେ କବି କହନ୍ତି, "ବୃହନ୍ନାରଦେ ଗୋ ପୁରାଣେ ଅଛନ୍ତି କହି ।'' (ଚ) ପୋଥିର ପାଠ ଅନୁସାରେ "ଗୁହ୍ୟ ବ୍ରହ୍ମପାଠେ ଅଛି ପୁଣି ଏହା କହି ।'' କିନ୍ତୁ ଉଭୟ ପାଠ ସମୀଚୀନ ନୁହେଁ ବୋଲି ଜଣାଯାଉଅଛି । "ବୃହଦ୍‌ବାମନ ଗୋ ପାଠେ ଛନ୍ତି ଏହା କହି" ପାଠ ଯୁକ୍ତିଯୁକ୍ତ ମନେହୁଏ । କୃଷ୍ଣଙ୍କର ଦଶଭୁଜତ୍ୱକୁ ଆମ୍ଭେମାନେ ମାଧୁର୍ଯ୍ୟ ଓ ଐଶ୍ୱର୍ଯ୍ୟର ସମାବେଶ ରୂପେ ଅର୍ଥ କରିପାରୁ । କୃଷ୍ଣ ନୃତ୍ୟରେ ଦ୍ୱିଭୁଜ ଓ ମୁରଲୀପାଣି ବୋଲି ବ୍ରହ୍ମ, ବ୍ରହ୍ମାଣ୍ଡପୁରାଣ ଓ ପୁରୁଷୋତ୍ତମତାପନୀରେ ବର୍ଣ୍ଣିତ । ଦ୍ୱିଭୁଜରେ ମୁରଲୀ ଓ ଅପର ଦ୍ୱିଭୁଜରେ ରାଧାଲିଙ୍ଗନ ଓ ରାଧାଙ୍କର ଚିବୁକ ଚୁମ୍ବନ ମାଧୁର୍ଯ୍ୟର ପରିଚାୟକ । ଏକ ଏକ ଭୁଜରେ ଶଙ୍ଖ, ଚକ୍ର, ଗଦା, ପଦ୍ମ, ଧନୁ ଓ ଖଡ୍ଗ-ଧାରଣ ଐଶ୍ୱର୍ଯ୍ୟର ପରିଚାୟକ । ଏହି ଦୁଇ ସମାବେଶରେ, ଐଶ୍ୱର୍ଯ୍ୟ ଓ ମାଧୁର୍ଯ୍ୟର ପ୍ରକଟମୂର୍ତ୍ତି । କିନ୍ତୁ କୃଷ୍ଣଙ୍କ ଦଶଭୁଜତ୍ୱ ମହାଭାରତର ଅନୁଶାସନ ପର୍ବର ୧୪୭ ଅଧ୍ୟାୟରେ କଥିତ:—

> କୃଷ୍ଣୋଜାମ୍ବୁନଦାଭାସୋ ବ୍ୟଭ୍ରେ ସୂର୍ଯ୍ୟଇବୋଦିତଃ,
> ଦଶବାହୁର୍ମହାତେଜା ଦେବତାରିନିସୂଦନ ॥

ଦଶଭୁଜର କାର୍ଯ୍ୟକଥା କିନ୍ତୁ ଏ ସ୍ଥଳରେ ଉଲ୍ଲେଖ ନାହିଁ । ଦେବଦୁର୍ଲ୍ଲଭ ନିଜ ଭାବନାରେ ଏ ରୂପ ବର୍ଣ୍ଣନ କରି ଅଛନ୍ତି ।

ଗ୍ରନ୍ଥର ନବମ ଛାନ୍ଦୋକ୍ତ ଗୋପୀକାମାନଙ୍କ ଦ୍ୱାରା ମାୟାକୁମାରୀଙ୍କ (ଗାୟେତ୍ରୀ) ଜନ୍ମ କବିଙ୍କର କଳ୍ପନାପ୍ରସୂତ ।

**ମାୟାକୁମାରୀ ।** ମହିଷାସୁର ସହ ଯୁଦ୍ଧ ସମୟରେ ଦୁର୍ଗା ଦେବୀଙ୍କ ଅଙ୍ଗରୁ ସଂଖ୍ୟାତୀତ କନ୍ୟା ଜାତ ହେବା ଚଣ୍ଡୀ ପୁରାଣରେ ବର୍ଣ୍ଣିତ ଅଛି (ସାରଳାଦାସ—ଚଣ୍ଡୀପୁରାଣ) । ଦେବୀତ୍ରିପୁରାଙ୍କର କଣ୍ଠସ୍ଥିତ ମାଳାମାନଙ୍କରୁ ନାନାଭାବମୟୀ ନାନାରୂପିଣୀ କନ୍ୟା ଜାତ ହେବା ରାଧାତନ୍ତ୍ରରେ ମଧ୍ୟ ଲିଖିତ । ହରିବଂଶର ୧୪୮।୧୪୯।୧୫୦

ଅଧ୍ୟାୟରେ ବର୍ଣ୍ଣିତ ଅଛି, ହରି ବୈଷ୍ଣବୀମାୟା ଆଶ୍ରୟ କରି ଭୈମମାନଙ୍କୁ ନଟବେଶରେ ବ୍ରଜପୁରକୁ ପ୍ରେରଣ କରିଥିଲେ । ସେହି ଊର୍ଣ୍ଣା ସଙ୍ଗରେ ତଦନୁରୂପ ନଟୀ, ବାରନାରୀ ଓ କୃଷ୍ଣଙ୍କ ସମୀପକୁ ପରସ୍ପର ପ୍ରେରିତ ଭଦ ନାମକ ନଟ ଓ ତାହାର ସଙ୍ଗିଗଣ ମଧ୍ୟ ଗମନ କରିଥିଲେ । ସେମାନେ ନୃତ୍ୟଗୀତ ଦ୍ୱାରା ସମସ୍ତ ଦାନବମାନଙ୍କୁ ମୁଗ୍ଧ ଓ ମତ୍ତ କରିଥିଲେ । ଦେବୀ ଯୁଦ୍ଧରେ ବିଷ୍ଣୁ, ଇନ୍ଦ୍ର, ବରୁଣ ଆଦିଙ୍କର ଶକ୍ତି ସ୍ତ୍ରୀରୂପ ପରିଗ୍ରହ କରି ଦୁର୍ଗାଙ୍କୁ ସହାୟତା ପ୍ରଦାନ କରିଥିବା ଦେବୀଭାଗବତାଦିରେ ଦ୍ରଷ୍ଟବ୍ୟ । ଏହିସବୁ ପାଠ କରି କବି ମାୟାକୁମାରୀମାନଙ୍କୁ କଳ୍ପନାରେ ସୃଷ୍ଟି କରିଥିବେ, ଆମ୍ଭର ପୂର୍ଣ୍ଣ ବିଶ୍ୱାସ ।

"ପରମାତ୍ମା" ଭଗବାନ୍ "ଗୋପୀଗଣଙ୍କ ଆବରଣ ଉନ୍ମୋଚନାର୍ଥ

**କୃଷ୍ଣଙ୍କ ଲୀଳା କରିଣତ୍ ।**

ମଧୁରମୋହନ—ମନ୍ମଥନାଦିନୀ ମୁରଲୀର ଧ୍ୱନିରେ ସେମାନଙ୍କୁ ସ୍ୱସମୀପକୁ ଆକର୍ଷଣ କଲେ । ସଚ୍ଚିଦାନନ୍ଦଙ୍କର କାରୁଣ୍ୟମୟ ଆହ୍ୱାନରେ ଗୋପୀବୃନ୍ଦ ପ୍ରକୃତିର ଖ୍ରିଷଣତାକୁ ଭ୍ରୂକ୍ଷେପ ନକରି ସାଂସାରିକ ବିଷୟ ପ୍ରତି ମମତା ପରିହାର ପୂର୍ବକ ଉଲ୍ଲୋଳ ଅବସ୍ଥାରେ ମୁବକାରଣଙ୍କ ନିକଟରେ ଉପସ୍ଥିତ ହେଲେ । ସେତେବେଳେ ପରୀକ୍ଷା ଛଳରେ * ବିଶ୍ୱକାରଣଙ୍କ ପ୍ରତ୍ୟାଖ୍ୟାନ ବାଣୀ ଶ୍ରବଣରେ ସେମାନଙ୍କର ଯେ ମାନସିକ ବିକ୍ଷୋଭ ସ୍ୱତଃ ଜାତ ହୋଇଥିଲା, ତାହା ଅନୁଭବୀ ଅନୁମାନ କରୁ । ଗୋପୀମାନଙ୍କ ଉତ୍ତର:—"ସମସ୍ତ ବିଷୟ ବିଭବ ପରିତ୍ୟାଗ କରି ଆପଣଙ୍କ ପାଦମୂଳ ଭଜନ କରିଅଛୁଁ, ଆପଣ ଆମ୍ଭମାନଙ୍କୁ ଗ୍ରହଣ କରନ୍ତୁ । ପତିପୁତ୍ରାଦି କ୍ଳେଶଦାୟକ, ସେମାନଙ୍କଠାରେ ପ୍ରୟୋଜନ ନାହିଁ । ଆପଣଙ୍କ ଅର୍ଚ୍ଚନାରେ ପତିପୁତ୍ରାଦି ସମସ୍ତଙ୍କ ସେବା ସମାହିତ ହେବ, ଆପଣ ଆମ୍ଭମାନଙ୍କର ହୃଦୟ ହରଣ କରିଅଛନ୍ତି, ଆମ୍ଭେମାନେ ଆପଣଙ୍କ ସଙ୍ଗ ପରିତ୍ୟାଗ କରିବୁ ନାହିଁ ।"

---

* ଏହି ପରୀକ୍ଷାରେ କେତେ ବ୍ରାହ୍ମଣକନ୍ୟାଗଣ ଉତ୍ତୀର୍ଣ୍ଣ ହୋଇ ପାରିଲେ ନାହିଁ । ଦୁଃଖରେ ଗୃହପ୍ରତି ପ୍ରତ୍ୟାବର୍ତ୍ତନ କଲେ ।

ସେହି ଭଗବଦର୍ପିତପ୍ରାଣା ଗୋପୀମାନଙ୍କର କଅଣ୍ଟନ୍ତ ବିରହରେ ପ୍ରାଣର ଯେ ଉଦ୍‌ବେଗ ଓ ଆକୁଳତା ତାହା ଶଂସିତା ମାୟାକୁମାରୀମାନଙ୍କ ମୁଖରେ ଶୋଭନ-ରୂପେ କଥିତ; ସର୍ବମଙ୍ଗଳାଧାରଙ୍କ ଅଭାବରେ, ବିରହରେ ଆଜି ସମସ୍ତ ଜୀବ ହତପ୍ରାଣ ଓ ଜଡ଼-ପ୍ରକୃତିର ସୁଦ୍ଧା ସନ୍ଧ ଯେ ବିଶ୍ଳଥ କବିଙ୍କଦ୍ୱାରା ତାହା ମଧ୍ୟ ସେମାନଙ୍କ ମୁଖରେ ଅତି କରୁଣ ଭାବରେ ବର୍ଣ୍ଣିତ ।

**କୃଷ୍ଣବିରହରେ ଗୋକୁଳର ଅବସ୍ଥା ।**

ଅପ୍ରାକୃତ କାମର ବିପ୍ରଲମ୍ଭରେ ମାଦନାଖ୍ୟା ରାଧାଙ୍କର ଉନ୍ମତ୍ତ ପ୍ରଳାପ ଆହା କି ମଧୁର, କି କରୁଣ, କି ହୃଦୟସ୍ପର୍ଶୀ । ଭକ୍ତର ଏହାହିଁ ଚରମଲାଭ, ଏହାହିଁ ଅପ୍ରୟୋଜନ ପ୍ରେମ, ଏଥିରେ ତ ଭଗବତ୍ପ୍ରାପ୍ତି ।

(ଦଶମ ଗ୍ରନ୍ଥ)

୧୧ଶ ଗ୍ରନ୍ଥରେ ସର୍ବକୃଷ୍ଣଲୀଳାନୁଷ୍ଠାତ୍ରୀ ଯୋଗମାୟା—କାମାକ୍ଷୀ-କାତ୍ୟାୟନୀଙ୍କର ପୂଜା । ଯେଉଁ ଦେବୀଙ୍କ ଅର୍ଚ୍ଚନା କରି ଗୋପୀଗଣ ନନ୍ଦଗୋପଙ୍କର ପୁତ୍ରଙ୍କୁ ନିଜର ସ୍ୱାମୀ ରୂପରେ ପ୍ରାପ୍ତ ହୋଇଥିଲେ ଆଜି ତାଙ୍କ ପୂଜାର ଫଳସ୍ୱରୂପ ତାଙ୍କଠାରୁ କୃଷ୍ଣ ପ୍ରତ୍ୟାଗମନ ସୂଚକ ଆଶ୍ୱାସ-ବାଣୀ ଶ୍ରବଣ କରି ଆତ୍ମବିକ୍ଷୋଭ କିଞ୍ଚିତ ଉପଶମ କଲେ ।

୧୩ଶ ଅଧ୍ୟାୟରେ କବି ବିରହସନ୍ତପ୍ତା ଅରଣ୍ୟରେ କୃଷ୍ଣାନ୍ୱେଷଣ-ତତ୍ପର ଗୋପୀଗଣଙ୍କର ଯେ ମାନସବୃତ୍ତି ବର୍ଣ୍ଣନ କରିଅଛନ୍ତି ତହିଁରେ ଭାଗବତ ରାସପଞ୍ଚାଧ୍ୟାୟୀର ୩୦ଶ ଅଧ୍ୟାୟ ଓ ୪୭ଶ ଅଧ୍ୟାୟପ୍ରୋକ୍ତ ଉଦ୍ଧବଙ୍କ ମଥୁରା ପ୍ରସ୍ଥାନ ବର୍ଣ୍ଣନାର ଛାୟା ପ୍ରତିବିମ୍ବିତ ।

ମାୟାକୁମାରୀମାନଙ୍କ ପ୍ରସ୍ଥାନ ପରେ ଅଷ୍ଟପାଟବଂଶୀଙ୍କ ସହିତ କୃଷ୍ଣଙ୍କର ମାଧୁର୍ଯ୍ୟମୟୀ, ଆନନ୍ଦ ସ୍ୱରୂପିଣୀ ଗୋପୀପଣକବ୍ର ରାଧାଙ୍କ ଦର୍ଶନ ନିମନ୍ତେ ଉତ୍କଣ୍ଠା-ଭଗ୍ନ ହୃଦୟ ଓ ତହୁଁ ଗରୁଡ଼ ପୃଷ୍ଠରେ ସେମାନଙ୍କର ମର୍ତ୍ତ୍ୟ-ବୃନ୍ଦାବନଯାତ୍ରା । ବୃନ୍ଦାବନରେ ଅଷ୍ଟପାଟବଂଶୀମାନଙ୍କୁ ମର୍ତ୍ତ୍ୟ ରାସଲୀଳା ଦର୍ଶାଇବା କବିଙ୍କ ଭାବନାର ଏକ ଅଭିନବ ବସ୍ତୁ ।

ଏହି ରାସଲୀଳାକୁ ଆମ୍ଭେମାନେ ଶରଦ୍ରାସର ଅନ୍ତର୍ଭୁକ୍ତ କରି ନ ପାରୁଁ ।

ଦ୍ୱାରକାବାସ ପରେ ଏ ଲୀଳାର ଉପକ୍ରମ; କବି କହି ଅଛନ୍ତି, "ଏଥି ଗୋ ଅପୂର୍ବ ଋତୁ, ଚଇତ୍ର ପୂର୍ଣ୍ଣମୀ ରାତି" (୧୪ଶ ଛାନ୍ଦ) । ଏ ବସନ୍ତ ଲୀଳା କିନ୍ତୁ ଗୀତଗୋବିନ୍ଦ ବର୍ଣ୍ଣିତ ବସନ୍ତରାସ ନୁହେଁ । ତାହାର କାରଣ ପୂର୍ବେ ପ୍ରଦର୍ଶିତ ହୋଇଅଛି । ଏହା ଏକ ସ୍ୱତନ୍ତ୍ର ବସନ୍ତ ରାସ ।

**ବିଭିନ୍ନନାୟିକାଙ୍କ ବିଶେଷତ୍ୱ ।**

ଏହି ଲୀଳା ବୃନ୍ଦାବନରେ ଗୋପୀଙ୍କ ସହିତ, ଦ୍ୱାରକାରେ ଲୀଳା ମହିଷୀମାନଙ୍କ ସହିତ, ମଥୁରାରେ ଲୀଳା ମଥୁରା ନାରୀଙ୍କ ସହିତ । ଗୋପୀମାନେ ସମର୍ଥା, ମଥୁରାବାସିନୀ ସାଧାରଣୀ, ଦ୍ୱାରକାବାସିନୀଗଣ ସମଞ୍ଜସା । ସମର୍ଥା ନାରୀ ନିଜର ସମସ୍ତ ସୁଖ ପରିହାର କରି କେବଳ ସ୍ୱାମୀ ସୁଖ ଦେଖିବାରେ ତତ୍ପରା, ସାଧାରଣୀ କେବଳ ନିଜ ସୁଖର ପ୍ରତ୍ୟାଶିନୀ, ସମଞ୍ଜସା କିନ୍ତୁ ନିଜର ଓ ସ୍ୱାମୀଙ୍କର ଉଭୟଙ୍କର ସୁଖପ୍ରାର୍ଥିନୀ ।

**ଗୋପୀମାହାତ୍ମ୍ୟ ।**

ଯେଉଁ ଭଗବତ୍ପ୍ରାପ୍ତିରେ ଭକ୍ତଶ୍ରେଷ୍ଠ ସିଦ୍ଧଋଷିବୃନ୍ଦ ସମସ୍ତ ବିଷୟ-ବାସନାକୁ ଜଳାଞ୍ଜଳି ଦେଇ ଅହରହ ପ୍ରାଣର ବ୍ୟାକୁଳତାରେ ଇତସ୍ତତଃ ଧାବମାନ ଓ ଉନ୍ମତ୍ତ ହୋଇ କେତେବେଳେ ରୋଦନ, କେତେବେଳେ ହାସ୍ୟ, କେତେବେଳେ ଆନନ୍ଦ ପ୍ରକାଶ, କେତେବେଳେ ଅଲୌକିକ କଥାଳାପ, କେତେବେଳେ ନୃତ୍ୟ, କେତେବେଳେ ପ୍ରଭୁଙ୍କ ନାମଗାନ ଓ କେତେବେଳେ ତାଙ୍କର ଗୁଣାନୁକୀର୍ତ୍ତନ କରି କରି ଅଶ୍ରୁ ବିସର୍ଜନ କରନ୍ତି, ସେହି ଭଗବାନଙ୍କର ଭକ୍ତସ୍ୱାପାଗଲଗଣଙ୍କର ଶିରୋମଣିସ୍ୱରୂପିଣୀ ଗୋପୀ-ମାନଙ୍କର ବୃନ୍ଦାବନସ୍ଥ ଚରଣରେଣୁ ସେବନରେ ଅନ୍ତରଙ୍ଗ ଭକ୍ତ ପ୍ରବର ଉଦ୍ଧବଙ୍କର ଐକାନ୍ତିକୀ ଇଚ୍ଛା; ବ୍ରହ୍ମା, ଶିବ, ଲକ୍ଷ୍ମୀଙ୍କ ଦ୍ୱାରା ଯାହାଙ୍କର ଚରଣରେଣୁ ପାପ ପ୍ରକ୍ଷାଳନ ନିମିତ୍ତ ଶିରୋଭାଗରେ ଗୃହୀତ, ଯାହାଙ୍କର ମାହାତ୍ମ୍ୟ ପ୍ରଖ୍ୟାପନରେ ନାରଦ, ବ୍ୟାସ, ସନକ, ସନାତନ, ଶାଣ୍ଡିଲ୍ୟ, ଆଜନ୍ମ-ବ୍ରହ୍ମଚାରୀ ଶୁକଦେବ ସର୍ବଦା ଯୋଡ଼ହସ୍ତ, ଯାହାଙ୍କର ଭାବାବେଶରେ ଚୈତନ୍ୟଚନ୍ଦ୍ରଙ୍କର ଉନ୍ମାଦ, ଯାହାଙ୍କର ଲୀଳାମାଧୁରୀରେ ବିଲ୍ୱମଙ୍ଗଳ,

ଜୟଦେବ, ବିଦ୍ୟାପତି, ଚଣ୍ଡୀଦାସ, ରାମାନନ୍ଦ ଆଦି ଆତ୍ମବିସ୍ମୃତ ଓ ସାଧୁଙ୍କର ନାମାସ୍ୱାଦନରେ ଆଜି ଭାରତର ଲକ୍ଷ ଲକ୍ଷ ପ୍ରାଣୀ ଉନ୍ମନା ସେହି ଗୋପୀଗଣଙ୍କ ରାସଲୀଳାର ମହତ୍ତ୍ୱ ଓ ଉପାଦେୟତ୍ୱ, ସମୀଚୀନତ୍ୱ ଓ ସଙ୍ଗତିର ଉପଲବ୍ଧି ଜଡ଼ବାଦର ଜଡ଼ହୃଦୟରେ, କ୍ଷଣସ୍ଥବାଦର କ୍ଷଣସ୍ଥାୟିକତାରେ, ବିଜ୍ଞାନବାଦର ପ୍ରାକୃତ ବିଷୟଜ୍ଞାନର ଉଚ୍ଛୃଙ୍ଖଳରେ, ଶୂନ୍ୟବାଦର ଶୂନ୍ୟସ୍ୱରୂପତାରେ, ଅଦ୍ୱୈତବାଦର ବୃଥା ମାୟୋପାଧିକତାରେ ଅସମ୍ଭବ ।

କବି କହୁଛନ୍ତି—

ସର୍ବ ଭକ୍ତି ମଧ୍ୟେ ପ୍ରେମଭକ୍ତି ଅଟେ ସାର ।
ସେ ଭକ୍ତି ଅଟଇ କୋଟି ଗୋପୀମାନଙ୍କର ॥
ଗୋପୀଙ୍କି ଭଜନ୍ତି ଭକ୍ତ ପ୍ରେମ ଭକ୍ତି ପାଇ ।
ବିନା ପ୍ରେମ ଭକ୍ତିରେ ଦର୍ଶନ ମୋତେ ନାହିଁ ॥
ପ୍ରେମ ଭକ୍ତି ପ୍ରାପତ ଗୋପୀଙ୍କ ପରସନ୍ନେ ।
ପୁଂଲିଙ୍ଗ ପାଲଟି ସ୍ତ୍ରୀ ହୁଅଇ ତକ୍ଷଣେ ॥
ଅଙ୍ଗସିଦ୍ଧ ହୋଇଲେ ମୋ ପାରୁଣରେ ରହି ।
କୋଟି କଳ୍ପ ଗଲେହେଁ ପଲକ ତାକୁ ନୋହି ॥
ପୁରୁଷ ଅଙ୍ଗରେ କେହୁ ଦର୍ଶନ କରିବ ।
ମୁଣ୍ଡର ଉପରେ କେହୁ ମୁଣ୍ଡେକ ବହିବ ॥
ସ୍ତ୍ରୀସି ବୃନ୍ଦ ମଧ୍ୟରେ ପୁରୁଷବର ମୁହିଁ ।
× × × ×
ସେ ମହାରାସମଣ୍ଡଳୀ ନିତ୍ୟ ବୃନ୍ଦାବନେ ।
ତହିଁ ମୁଁ ବସଇ ରାଧା ଅଙ୍ଗ ଆଲିଙ୍ଗନେ ॥
× × ×
ତାଙ୍କୁ ଘେନି ଗୋପପୁରେ ନାନା କ୍ରୀଡ଼ା କଲି ।
ନିତ୍ୟସ୍ଥଳ ରାସଲୀଳା ବନେ ଭିଆଇଲି ॥

(୭ମ ଗ୍ରନ୍ଥ)

ଏହା ନିତ୍ୟଗୋଲୋକର ନିତ୍ୟଲୀଳାର ବିଷୟ । ମର୍ତ୍ତ୍ୟ ବୃନ୍ଦାବନର ଲୀଳା ଏହାଠାରୁ କିଞ୍ଚିତ୍ ନ୍ୟୂନ । ଏହା ଗୌଡ଼ୀୟ ବୈଷ୍ଣବମାନଙ୍କର ମତ-ବିରୋଧୀ । କିନ୍ତୁ କବିଙ୍କ ସ୍ଥାନ ସ୍ୱତନ୍ତ୍ର କାରଣ କୃଷ୍ଣଚନ୍ଦ୍ର ମର୍ତ୍ତ୍ୟଲୀଳା ଅଷ୍ଟପାଟ ରାଣୀମାନଙ୍କୁ ଦେଖାଇ ପାରିଥିଲେ; କିନ୍ତୁ ନିତ୍ୟଲୀଳା ଅଷ୍ଟପାଟରାଣୀ-ଶିରୋମଣିସ୍ୱରୂପିଣୀ ରୁକ୍ମିଣୀଙ୍କୁ ଦେଖାଇ ପାରି ନ ଥିଲେ ।

ତ୍ରିପୁରାଙ୍କ ଉକ୍ତି—

ମର୍ତ୍ତ୍ୟ ଗୋପୀ ରାଧାଙ୍କୁ ଅଛନ୍ତି ଏ ଗୃହି ।
ମନ୍ତ୍ର ସିଦ୍ଧ କରିବେ ସେ ରୂପକୁ ଧ୍ୟାୟି ॥

(୨୩ ଛନ୍ଦ)

**ମର୍ତ୍ତ୍ୟଲୀଳା ନିତ୍ୟ-ଲୀଳାର ପ୍ରକାଶ ଓ ସ୍ତ୍ରୀତ୍ୱରେ ଭଗବତ୍ପ୍ରାପ୍ତି**

ଏହି ମର୍ତ୍ତ୍ୟଲୀଳା ଦର୍ଶନରେ ମଧ୍ୟ ସକଳ ଶ୍ରେଣୀର ଭକ୍ତ ଉପଯୁକ୍ତ ନୁହନ୍ତି । ପଦ୍ମପୁରାଣରେ ବର୍ଣ୍ଣିତ ଅଛି ଯେ ଏହି ମର୍ତ୍ତ୍ୟବୃନ୍ଦାବନର ଲୀଳା ଦର୍ଶନ ନିମନ୍ତେ ସଖା ଅର୍ଜୁନ କୃଷ୍ଣଚନ୍ଦ୍ରଙ୍କୁ ସବିନୟ ପ୍ରାର୍ଥନା କରିଥିଲେ । କୃଷ୍ଣଚନ୍ଦ୍ର ନିଜର ଅସାମର୍ଥ୍ୟ ଜଣାଇ ତ୍ରିପୁରା ଦେବୀଙ୍କ ପ୍ରସାଦ ଲାଭ ନିମିତ୍ତ ତାଙ୍କୁ ଉପଦେଶ ଦେଇଥିଲେ । ଦେବୀଙ୍କ ଛଳନାରେ ଅର୍ଜୁନ ସ୍ତ୍ରୀତ୍ୱ ପ୍ରାପ୍ତିପୂର୍ବକ ଲୀଳା ଦର୍ଶନ କରିଥିଲେ । ନାରଦଙ୍କର ମଧ୍ୟ ବୃନ୍ଦାବନରେ ଲୀଳାଦର୍ଶନରେ ସ୍ତ୍ରୀତ୍ୱ ପ୍ରାପ୍ତି ପଦ୍ମ ଓ ଆଦି ପୁରାଣରେ ଲିଖିତ । (ମହାତ୍ମା ଅଗ୍ନି ପୁତ୍ରଗଣଙ୍କର ବୈଧୀ ଭକ୍ତିରେ ସ୍ତ୍ରୀତ୍ୱ ପ୍ରାପ୍ତି ଓ ବାସୁଦେବଙ୍କୁ ପତିରୂପେ ପ୍ରାପ୍ତି ମହାକୂର୍ମ ପୁରାଣରେ ଦ୍ରଷ୍ଟବ୍ୟ । ବୈଧୀସେବାରେ ରମଣାଭିଳାଷୀ ହୋଇ ଦ୍ୱାରକାରେ ବାସୁଦେବଙ୍କ ମହିଷୀତ୍ୱପ୍ରାପ୍ତି ମଧ୍ୟ ଶାସ୍ତ୍ରପ୍ରସିଦ୍ଧ । ଦେବୀ ଭାଗବତରେ ମଧ୍ୟ ବୈକୁଣ୍ଠୋପରିସ୍ଥିତ ଦେବୀ ପୀଠରେ ଆଦ୍ୟା-ଶକ୍ତିଙ୍କ ସହିତ ଦର୍ଶନ କାଳରେ ବ୍ରହ୍ମା ବିଷ୍ଣୁ ମହେଶ୍ୱରଙ୍କର ସ୍ତ୍ରୀତ୍ୱ ପ୍ରାପ୍ତି ମଧ୍ୟ ଏହି ଲୀଳାର ତତ୍ତ୍ୱ ପ୍ରକାରାନ୍ତରେ ପ୍ରତିପାଦିତ କରୁଅଛି ।)

ଭଗବାନ କେବଳ ହିଁ ପୁରୁଷ, ପ୍ରକୃତି ତାହାଙ୍କର ଦାସୀ, ପ୍ରକୃତିସ୍ଥ ଜୀବଗଣ ପ୍ରକୃତ୍ୟାତ୍ମିକ :—କିନ୍ତୁ ନାରୀ । ଏହି ଜୀବର ସ୍ତ୍ରୀତ୍ୱରେ ପରମଠାରେ ପ୍ରୀତି ହିଁ ଗୋପଲୀଳା ।

"ସ ଯୋ:ପାନ୍ ଜବାନ୍ ଆତ୍ମତ୍ୱେନ ସୃଷ୍ଟି ପର୍ଯ୍ୟନ୍ତଂ ଆଲୟ, ସଖେ ପାଲୋହ୍ୟାମ୍ । ତତ୍ସ୍ୱେଽହମ । ପରଂବ୍ରହ୍ମକୃଷ୍ଣାତ୍ମକୋ ନିତ୍ୟାନନ୍ଦସ୍ୱରୂପଃ ସୋଽହମ ।" (ଗୋପାଳତାପିନୀ) Bibleରେ ମଧ୍ୟ ଈଶ୍ୱରଙ୍କର ପ୍ରେମ ପତିପତ୍ନୀର ପ୍ରେମଛଳରେ ବର୍ଣ୍ଣିତ ହୋଇଅଛି—

Pilgrim's Progressରେ ଲିଖିତ ଅଛି—

"As the bridegroom rejoiceth over the bride
So did their God rejoice over them."

ପୁନଶ୍ଚ

"If you see my beloved tell him that I am sick of love."

ଏବଂ

"Lo as they entered they were transfigured".

ଏଠାରେ transfigured ଶବ୍ଦର ଗୂଢ଼ ଅର୍ଥ ସ୍ତ୍ରୀ ଦେହ ଧାରଣ ।

West Minister Reviewରେ ଶ୍ରୀମତୀ ସୁଇନ ଗୋଟିଏ ଦାର୍ଶନିକ ପ୍ରବନ୍ଧରେ କହିଅଛନ୍ତି—

"The ultimate destiny of man is to become a woman."

ଯୀଶୁଖ୍ରୀଷ୍ଟ ମଧ୍ୟ କହିଅଛନ୍ତି—

"When that which is perfect is come the that which is impefect is done away and the two shall be one, the male and the female."

ରାମକୃଷ୍ଣ ପରମହଂସ ନିଜର ଶରୀରକୁ ଲକ୍ଷ୍ୟ କରି କହୁଥାନ୍ତି—
"ଏର ଭିତରେ ଯେଟା ଆଛେ ସେଟା ମେଯେ ମାନୁ ।"

"God's love is often referred to in the Bible as the love of a father for his children, as that

of a loving husband and especially as that of a bridegroom".

(Enclyopaedia of Religion and Ethics)

ଋଷି ଓ ଉପନିଷଦୋକ୍ତଙ୍କର ସ୍ତ୍ରୀତ୍ୱପ୍ରାପ୍ତି ହିଁ ଶ୍ରୀକୃଷ୍ଣ ରସାସ୍ୱାଦନାର୍ଥ । ପ୍ରକାରା-ନ୍ତରରେ ଦେଖିଲେ ସ୍ତ୍ରୀତ୍ୱ ଓ ପୁଂସ୍ତ୍ୱ ଭାବଗତ, ଶରୀରଗତ ନୁହେଁ । ଯେ ପର୍ଯ୍ୟନ୍ତ ପୁଂସ୍ତ୍ୱ ଅର୍ଥାତ୍ ଅହଂଭାବ ଥିବ ସେ ପର୍ଯ୍ୟନ୍ତ ଭଗବଦ୍ଦର୍ଶନ ଦୁର୍ଲ୍ଲଭ ।

**ଭକ୍ତି ।**

ଏହି ରାସଲୀଳା ପରମର ସହିତ ଜୀବର, ଭଗବାନଙ୍କ ସହିତ ଭକ୍ତର । ଭକ୍ତିରୁ ଭକ୍ତର ସ୍ଥାନ ନିରୂପଣ ଆଦୌ କର୍ତ୍ତବ୍ୟ ମଣି ତାହାର ବିବୃତି ନିମ୍ନରେ ପ୍ରଦତ୍ତ କଲି । ଜ୍ଞାନ ଓ ଭକ୍ତିର ଆଧାର ଭିନ୍ନ, ପୃଥକ୍ । ଜ୍ଞାନ ମସ୍ତିଷ୍କର, ଭକ୍ତି ହୃଦୟର । ଚିଦଘନଙ୍କ—ଅନନ୍ତଶକ୍ତିଙ୍କ ମହିମା ଅବଚ୍ଛେଦ ସସୀମ ସାମାନ୍ୟ ପ୍ରାକୃତ ଅହଂଭାବାଶ୍ରୟ ଜ୍ଞାନର ଶକ୍ତି-ବହିର୍ଭୂତ । ବିଶ୍ୱଚୈତନ୍ୟଙ୍କର ଅଜ୍ଞାନୋପହତ ପରମାଣୁ ଚୈତନ୍ୟ ଦ୍ୱାରା ତତ୍ତ୍ୱୋପଲବ୍ଧି ସୁଦୂରପରାହତ । ଦୁର୍ବଳ ଜ୍ଞାନର ଶୋଚନୀୟତାରେ ଭକ୍ତି-ଦେବୀଙ୍କର ପଦାର୍ଚ୍ଚନରେ ସ୍ୱସ୍ତୀକରଣ ।

"ନୈଷା ତର୍କେଣ ମତିରାପନେୟା" (କଠୋପନିଷଦ୍)

Tennyson ମଧ୍ୟ କହିଅଛନ୍ତି—

By faith and faith alone embrace
Beliving where we can not prove"

ସେହି ଭକ୍ତି ଦ୍ୱିବିଧ :—ବୈଧୀ ଓ ରାଗାନୁଗା । ଭଗବାନଙ୍କ ଉଦ୍ଦେଶ୍ୟରେ ଶାସ୍ତ୍ରବିହିତ କ୍ରିୟା ଅନୁଷ୍ଠାନ ହିଁ ବୈଧୀ ଭକ୍ତିରେ ପର୍ଯ୍ୟବସିତ । ଏହି ବୈଧୀ ଭକ୍ତି ପାଳନାରେ ପ୍ରେମଭକ୍ତି ଲାଭ । କେବଳ ଅନୁରାଗ ବଶତଃ ଶାସ୍ତ୍ରସୀମା ଅତିକ୍ରମ କରି ଲୋକ ଲଜ୍ଜା ସମାଜଭୟ ସମସ୍ତ ପରିହାର ପୂର୍ବକ ଜାତିକୁଳଶୀଳ ଉପେକ୍ଷାରେ ଯେଉଁମାନେ ଭଗବାନଙ୍କ ନିର୍ମଳ ପ୍ରେମ-ସାଗରରେ ମଗ୍ନ ହୋଇ ପାରନ୍ତି ସେହିମାନେ ହିଁ କେବଳ ରାଗାନୁଗା ମାର୍ଗର ଅଧିକାରୀ ।

ବ୍ରଜବାସୀଙ୍କର ପ୍ରକାଶ୍ୟରୂପ ଯେ ଭକ୍ତି ବର୍ତ୍ତମାନ, ତାହା ରାଗାତ୍ମିକା ଭକ୍ତି । ଏହି ରାଗାତ୍ମିକା ଭକ୍ତିର ଅନୁଗତା ଭକ୍ତି ହିଁ ରାଗାନୁଗା ଭକ୍ତି :— ରାଗାନୁଗା ଭକ୍ତିର ପରିଜ୍ଞାନାର୍ଥ ରାଗାତ୍ମିକା ଭକ୍ତିର ଅର୍ଥ ଆଦୌ ଜ୍ଞାତବ୍ୟ । ଅଭୀଷ୍ଟ ବସ୍ତୁରେ ଯେ ସ୍ୱାଭାବିକ ପରମ ଆବିଷ୍ଟତା ଅର୍ଥାତ୍ ପ୍ରେମମୟୀ ତୃଷ୍ଣା ତାହାର ନାମ ରାଗ । ସେହି ରାଗମୟୀ ଭକ୍ତିର ନାମ ରାଗାତ୍ମିକା ଭକ୍ତି । ରାଗାତ୍ମିକା ଭକ୍ତି କାମରୂପା ଓ ସମ୍ବନ୍ଧରୂପା ଭେଦରେ ଦ୍ୱିବିଧ । ଗୋପୀ-ଗଣଙ୍କର କାମରୂପା ଓ ଯାଦବ ଏବଂ ଗୋପଗଣଙ୍କର ସମ୍ବନ୍ଧରୂପ ଭକ୍ତି:—ଗୋପୀମାନଙ୍କର ଏହି ବିଶିଷ୍ଟ ପ୍ରେମ କୌଣସି ଏକ ଅନିର୍ବଚନୀୟ ମାଧୁରୀ ପ୍ରାପ୍ତ ହୋଇ ରାସଲୀଳା ବର୍ଣ୍ଣିତ କ୍ରୀଡ଼ାମାନଙ୍କର କାରଣ ହୁଏ ବୋଲି ଏହି ବିଶେଷ ପ୍ରେମ କାମ ରୂପେ ଅଭିହିତ ।

ରାଗାନୁଗା ଭକ୍ତି ମଧ୍ୟ ଦ୍ୱିବିଧ :—କାମାନୁଗା ଓ ସମ୍ବନ୍ଧାନୁଗା; କାମରୂପା ଭକ୍ତିର ଅନୁଗାମିନୀ ଯେ ତୃଷ୍ଣା ତାହାର ନାମ କାମାନୁଗା ଭକ୍ତି । ଶ୍ରୀମୂର୍ତ୍ତିଦର୍ଶନ ଓ ପ୍ରେୟସୀସହ କୃଷ୍ଣଚନ୍ଦ୍ରଙ୍କ ଲୀଳା ଶ୍ରବଣରେ ଯେଉଁମାନେ ସେହି ଭାବାକାଙ୍କ୍ଷୀ ହୁଅନ୍ତି ସେମାନେ କାମାନୁଗା ଭକ୍ତିର ଅଧିକାରୀ । ପୂର୍ବୋକ୍ତ ଋଷିବୃନ୍ଦ, ଉପନିଷଦାଦି, ଅର୍ଜୁନ, ନାରଦ ଏହି ଭକ୍ତିର ଅଧିକାରୀ ଥିଲେ । ବିଲ୍ୱମଙ୍ଗଳ, ଜୟଦେବ, ବିଦ୍ୟାପତି, ଚଣ୍ଡୀ ଦାସ, ରାମାନନ୍ଦ ପ୍ରଭୃତିଙ୍କର ମଧ୍ୟ ଏହି କାମାନୁଗା ଭକ୍ତି :— ( ବିଦଗ୍ଧ ଚିନ୍ତାମଣି ୪୨ ଗ୍ରନ୍ଥ ଦ୍ରଷ୍ଟବ୍ୟ । )

ସମଞ୍ଜସା ନାମ୍ନୀ ସ୍ୱକୀୟା ଓ ସମର୍ଥା ପରକୀୟା ରୂପେ ଗ୍ରହୀତବ୍ୟା ।

**କୃଷ୍ଣ ଓ ଗୋପୀଙ୍କ ନିର୍ଦ୍ଦୋଷତ୍ୱ ।**

ସମଞ୍ଜସାର ବୈଧୀ ଭକ୍ତି, ସମର୍ଥା-ପରକୀୟାର କାମାନୁଗା ଭକ୍ତି :—"ଯା ଦୁସ୍ତ୍ୟଜଂ ସ୍ୱଜନ-ମାର୍ଯ୍ୟପଥଂ ଚ ହିତ୍ୱା" ଯେଉଁମାନେ ଦୁଃଖରେ ପରିତ୍ୟାଜ୍ୟ ନିଜର ପତିପୁତ୍ରଙ୍କୁ ଓ ଲୋକ ମର୍ଯ୍ୟାଦାକୁ ଲଙ୍ଘନ କରିଅଛନ୍ତି । ରାଗାନୁରାଗ ମହାଭାବବତୀ ବ୍ରଜଦେବୀଙ୍କର ଯେତେ ପରିମାଣରେ ଲୌକିକ ଦୁଃଖ ଘଟିଥିଲା ତାହା ସେତେ ପରିମାଣରେ ସୁଖକର ହୋଇଥିଲା । ଏହି ଲୀଳାରେ ଲୌକିକ ଦୋଷ ସମ୍ଭବେ ନାହିଁ । "ନ ମଯ୍ୟେକାନ୍ତ ଭକ୍ତାନାଂ ଗୁଣଦୋଷୋଦ୍ଭବାଗୁଣାଃ ।" ଭାଗବତ ।

"ଲଘୁତ୍ୱମତ୍ରଯତ୍ ପ୍ରୋକ୍ତଂ ତତ୍ର ପ୍ରାକୃତନାୟକେ ।
ନ କୃଷ୍ଣେ ରସନର୍ଯ୍ୟାସସ୍ୱାଦାର୍ଥମବତାରଣି ।" ଉଜ୍ଜ୍ୱଳ ନୀଳମଣି ।

୬ ବଙ୍କିମଚନ୍ଦ୍ର ଚଟ୍ଟୋପାଧ୍ୟାୟ ତାଙ୍କ କୃଷ୍ଣଚରିତରେ କହିଅଛନ୍ତି ଯେ ବ୍ରଜଗୋପୀଗଣଙ୍କ ସହିତ ଶ୍ରୀକୃଷ୍ଣଙ୍କ ଶୃଙ୍ଗାରଲୀଳା ପତିଭାବରେ ସଂଘଟିତ, ଉପପତି ଭାବରେ ନୁହେଁ । ସେ ବୋଧହୁଏ ଶ୍ରୀବୈଷ୍ଣବଗୋସ୍ୱାମୀଙ୍କର ମତ ସମ୍ପୂର୍ଣ୍ଣ ଅବଗତ ହୋଇ ନ ପାରି ତାଙ୍କର ଲେଖାର ସ୍ଥଳବିଶେଷରେ ଉକ୍ତ ଗ୍ରହଣ କରି ଗୂଢ଼ ରାସଲୀଳାର ଅର୍ଥକୁ ଦୂଷିତ କରିଅଛନ୍ତି ଅଥବା ନିଜର ବୁଦ୍ଧିରେ ଏହି ବିଷୟକୁ ଆଧୁନିକ ରୁଚିର ଅନୁକୂଳ କରିବାକୁ ଯାଇ ଏହା କହିଅଛନ୍ତି । କିନ୍ତୁ ତାହା ସମ୍ପୂର୍ଣ୍ଣ ଭୁଲ, କାରଣ ।

"ତମେବ ପରମାତ୍ମାନଂ ଜାରବୁଦ୍ଧ୍ୟାପି ସଙ୍ଗତା ।
ଜହୁର୍ଗୁଣମୟଂ ଦେହଂ ସଦ୍ୟଃ ପ୍ରକ୍ଷୀଣବନ୍ଧନାଃ ।"

(ଭାଗବତ-୧୦-୨୯)

ଉପପତି ବୋଧରେ ମଧ୍ୟ ଶ୍ରୀକୃଷ୍ଣଙ୍କୁ ଧ୍ୟାନ କରି ପତି, ପିତାଙ୍କ ଦ୍ୱାରା ଗୃହ-ରୁଦ୍ଧ ଗୋପୀମାନେ ମାୟାମୁକ୍ତ ହୋଇଥିଲେ । ଗୁଣମୟ ଦେହ ତ୍ୟାଗ କରି ଚିନ୍ମୟ ଦେହରେ ସେମାନେ ଶ୍ରୀକୃଷ୍ଣଚନ୍ଦ୍ରଙ୍କ ସହ ମିଳିତ ହୋଇ-ଥିଲେ । ବଙ୍କିମ ବାବୁ ମଧ୍ୟ ଏ ଶ୍ଳୋକ ବୁଝି ପାରି ନାହାନ୍ତି ।

ପୁନଶ୍ଚ

ସିଷେବ ଆତ୍ମନ୍ୟବରୁଦ୍ଧ ସୌରତଃ ସର୍ବା ଶରତ୍କାବ୍ୟ
କଥାରସାଶ୍ରୟାଃ । (ଭାଗବତ-୧୦।୩୦)

"ଗୋପ ଅବଳା ଯେଣୁ ସଙ୍ଗେ । ହରି ରମିଲେ ଆତ୍ମାରଙ୍ଗେ ॥
ଯାହାର ନାହିଁ ରସଚ୍ୟୁତ । ଅଚ୍ୟୁତ ନାମ ଏଣୁ ଖ୍ୟାତ ।"

( ଜଗନ୍ନାଥ ଦାସ, ଭାଗବତ । )

ଏ ଶ୍ଳୋକ ଦ୍ୱାରା କୃଷ୍ଣଚନ୍ଦ୍ର ସ୍ଥିରବୀର୍ଯ୍ୟ ଓ ଅକ୍ଷୁଣ୍ଣ ଚରିତ୍ର ରୂପେ କଥିତ ।

ପୁନଶ୍ଚ

କୃତ୍ୱା ତ ବନ୍ତମାତ୍ମାନଂ ଯାବତୀ ର୍ଗୋପଯୋଷିତଃ
ରେମେ ଭଗବାଂସ୍ତାଭିରାତ୍ମାରାମୋଽପି ଲୀଳୟା ।

ଗୋପୀ କେ କୃଷ୍ଣ ରୂପ ହୋଇ । ଲୀଳାବିନୋଦେ ସବରାଇ ॥
ଯାହାର ନାହିଁ ରୂପରେଖ । ଗୋପୀଙ୍କି ଦେଲେ ଆତ୍ମାସୁଖ ॥

(ଜଗନ୍ନାଥ ଦାସ, ଭାଗବତ)

ପୁନଶ୍ଚ

ଭଗବାନପି ରନ୍ତୁଂମନଶ୍ଚକ୍ରେ (ଭାଗବତ'—ଆତ୍ମାରାମୋଽପ୍ୟରୀରମତ୍ ଇତ୍ୟାଦି ।

ଅନୁଗ୍ରହାୟ ଭୂତାନାଂ ମାନୁଷଂ ଦେହମାଶ୍ରିତଃ
ଭଜତେ ତାଦୃଶୀଃ କ୍ରୀଡ଼ା ଯାଃ ଶ୍ରୁତ୍ୱା ତତ୍ପରୋ ଭବେତ୍ ।

ଗୋପୀ ଗୋପାଳ ଆଦି କରି । ନର ଜୀବନ ଯେ ଆଚରି ।
ଭକତ ଜନ ତାରିବାରେ । ଯେ ଜାତ ମନୁଷ୍ୟ ଶରୀରେ ।
ତାର ଚରିତ ମନେ ଚିନ୍ତି । ଭକତି ପଥ ଆଚରନ୍ତି ।

(ଜଗନ୍ନାଥ ଦାସ, ଭାଗବତ)

ସ୍ୱଭକ୍ତ ରସ ଆସ୍ୱାଦନ କରାଇବା ନିମିତ୍ତହିଁ କରୁଣୈକସିନ୍ଧୁ କୃଷ୍ଣଚନ୍ଦ୍ରଙ୍କର ଏହି ରାସଲୀଳାର ମର୍ତ୍ତ୍ୟରେ ଽକଟନ । ରାସଲୀଳା ଶ୍ରବଣରେ ପରୀକ୍ଷିତ ଶୁକଦେବଙ୍କୁ ପ୍ରଶ୍ନ କରିଥିଲେ ।

ଆପ୍ତକାମୋ ଯଦୁପତିଃ କୃତବାନ୍ ବୈ ଜୁଗୁପ୍‌ସିତମ୍
କିମଭିପ୍ରାୟ ଏତନ୍ନଃ ସଂଶୟଂ ଛିନ୍ଧି ସୁବ୍ରତ ।

ଭାଗବତ ୧୦ । ୩୩ । ୩୦

ସ କଥଂ ଧର୍ମସେତୂନାଂ ବକ୍ତା କର୍ତ୍ତାଭିରକ୍ଷିତା ।
ପ୍ରତୀପମାଚରଦ୍ ବ୍ରହ୍ମନ୍ ପରଦାରାଭିମର୍ଷଣମ୍ ।

ଏହାର ଉତ୍ତରରେ ଶୁକଦେବ ଗୁରୁରୂପରେ ତର୍କ କରିବାକୁ ନିଷେଧ କରି କହିଲେ ।

ନୈବ ବଡୂନୂସ୍ୟ କାର୍ଯ୍ୟୋଭବତା ଭଗବତ୍ୟଜେ
ଯୋଗେଶ୍ୱରେଶ୍ୱରେ କୃଷ୍ଣେ ଯତ ଏତଦ୍ୱିମୁଚ୍ୟତେ ।
ଭାଗବତ ୧୦ । ୨୯ । ୧୬

ପୂର୍ବୋକ୍ତ "ଅନୁଗ୍ରହାୟ ଭୂତାନାଂ" ଓ ଅନ୍ୟାନ୍ୟ ଶ୍ଳୋକ ପାଠ କଲେ ଜଣାଯାଏ ଯେ, ଏ ରାସଲୀଳା ପ୍ରାକୃତ ଲୀଳା ନୁହେ । ଏହି ଲୀଳାର ଯଣକରଗଣ ଚିନ୍ମୟ, ଏମାନଙ୍କର ଅଧିଷ୍ଠାନ ଯୋଗୀ ଋଷିଙ୍କର ଅତୀତ ଊର୍ଦ୍ଧ୍ୱରେ । ଏହି ଲୀଳାରେ ଆଦୌ ଇନ୍ଦ୍ରିୟ ସମ୍ବନ୍ଧ ନାହିଁ । * ଏହି ଗୂଢ଼ ରାସଲୀଳାର କଣ୍ଟିତ୍ ଆସ୍ୱାଦ ପାଇବାକୁ ଇଚ୍ଛା କଲେ ଦୁସ୍ତରସାଧନା, ସୁବିମଲ ଚିତ୍ତବୃତ୍ତି, ଭଗବତ୍ତତ୍ତ୍ୱଗ୍ରହଣରେ ଅନୁକୂଳ ହୃଦୟ ପ୍ରୟୋଜନ ।

**ଲୀଳାର ମହାଭାବମୟତ୍ୱ ।**

ଆମ୍ଭମାନଙ୍କର କବି ପ୍ରତିଭାପୂର୍ଣ୍ଣଭକ୍ତପ୍ରବର ଦେବଦୁର୍ଲ୍ଲଭ ରାଗାନୁଗା- ଭକ୍ତିର ଅଧିକାରୀ । ତାଙ୍କର ମନ ରାଧାକୃଷ୍ଣ ଭାବରେ ବିହ୍ୱଳ ତାହାଙ୍କର ସ୍ଥିର ମଧୁର-ସଙ୍ଗୀତମୟ ଆତ୍ମା ସେହି ନିତ୍ୟାନନ୍ଦଦାୟିନୀ ଗଦଗଦୋଚ୍ଛ୍ୱାସିନୀ ଗୀତର ଉଦ୍‌ବୋଧନରେ କୌତୁକ୍ ବୟସ୍ପୃଷ୍ଟିବିସ୍ମୃତ ଓ ଆତ୍ମାଭିରାମ ସଚ୍ଚିଦାନନ୍ଦ ଗୋବିନ୍ଦଙ୍କ ଓ ମହାଭାବମୟୀ ଗୋପୀଗଣଙ୍କର ଶ୍ରୀମଙ୍ଗଙ୍କର ମାଧୁର୍ଯ୍ୟରସରେ ପରିପ୍ଲୁତ ହୋଇ ବିଲୋଳ ଲଳିତ-ଲାସ-ବିଳାସରେ ଉଚ୍ଛ୍ୱସିତ ହୋଇଅଛି ତାହାର ନିଦର୍ଶନ କଲେବ କତିପୟ ପଂକ୍ତି ନିମ୍ନରେ ପ୍ରଦତ୍ତ ହେଲା ।

ଝମକ ଝମକ ତାଳ ଝମକେ । କାଞ୍ଚିଣୀ ଝୁଣୁ ଝୁଣୁ ଚାରୁ ଚମକେ ।
ଝଣରଣ ଘର୍ଘର ଝଞ୍ଜୀର ନାଦେ । ମୃଦଙ୍ଗ ମଞ୍ଜୀର ପାଦେ ବିବାଦେ ।
× × ×
ଗାବନ୍ତି ବାବନ୍ତି ନୃତ୍ୟନ୍ତି ବାଳା । ଉନ୍ମଦ ମଦନଶରେ ବେଭୋଳା ।
ଗତଭ୍ରାନ୍ତି ଭ୍ରୂଲଗ୍ନ ମାଧୁରୀ ହାଟକ । ସ୍ୱର ଯୋଗଯୁକ୍ତ ଗାଉଛନ୍ତି ଗାଇକେ ।

---

* ବଙ୍କିମବାବୁଙ୍କ ମତରେ "ରାସଲୀଳା ବାଳକର ନୃତ୍ୟଗୀତମାତ୍ର । ଗୋପୀଗଣ ଶ୍ରୀକୃଷ୍ଣଙ୍କ ପତିଭାବରେ ପ୍ରାପ୍ତହୋଇଥିଲେ, ଏ ହେତୁ ଏଥିରେ କଣ୍ଟିତ୍ ଇନ୍ଦ୍ରିୟ ସମ୍ବନ୍ଧ ଅଛି ।" ଏହା ସମ୍ପୂର୍ଣ୍ଣ ପ୍ରମାଣ ବିହୀନ ଓ ଏ ଯୁକ୍ତି ଅଯଥାର୍ଥ ।

ଝଲମଲ ଝଟକନ୍ତ ତାଟଙ୍କ ଗଣ୍ଡେ । ବନ୍ଧ୍ୟତ ଖେଳ କି ନମୂନ ମଣ୍ଡେ ।
ରଙ୍ଗିମା ଅଧରେ ଭଙ୍ଗିମା ଗାଏ । ଲୋଚନ ବନେ କୃଷ୍ଣ ମୁଖ ଗୃହେଁ ।

* * *

ବିବିଧ ବନ୍ଧେ ପରିରମ୍ଭ ଲୀଳ । ଶୃଙ୍ଗାରର ସେ ଗୋପୀକୃଷ୍ଣ ଖେଳା ।
ଏକ ନ ଜାଣନ୍ତି ଅନ୍ତରେ ଭେଦ । ମୋ ବିନୁ କୃଷ୍ଣ ଆନ ନାହିଁ ଖେଦ ।

**ଗରୁଡ଼ ।**

ଏହି ରାସଲୀଳା ୧୪—୧୯ ଛାନ୍ଦ ମଧ୍ୟରେ ବର୍ଣ୍ଣିତ । ୧୪ଶ ଛାନ୍ଦରେ ଗରୁଡ଼ ପୃଷ୍ଠରେ ଅଷ୍ଟପାଟବଂଶୀଙ୍କ ସହ କୃଷ୍ଣଚନ୍ଦ୍ରଙ୍କର ମର୍ତ୍ତ୍ୟବୃନ୍ଦାବନକୁ ଆଗମନର ଏକ ଆଧ୍ୟାତ୍ମିକ ଅର୍ଥ ହୋଇପାରେ । ଏହି ଗରୁଡ଼ର ବେଦ ମୟତ୍ୱ ଭାଗବତ ଅଷ୍ଟମସ୍କନ୍ଧ ୩ୟ ଅଧ୍ୟାୟ ୩୧ ଶ୍ଳୋକରେ ବର୍ଣ୍ଣିତ । ପଦ୍ମପୁରାଣ ଉତ୍ତରଖଣ୍ଡ ୨୫୬।୩ରେ ମଧ୍ୟ "ବୈନତେୟସ୍ତ୍ରୟୀଶ୍ୱରଃ" ଅଛି । ଗରୁଡ଼ ଉପନିଷଦରେ ଗରୁଡ଼ଙ୍କର ବେଦମୟତ୍ୱ ପ୍ରତିପାଦିତ ।

"ସୁପର୍ଣ୍ଣୋଽସି ଗରୁତ୍ମାନ୍ ତ୍ରିବୃତ୍ତେ ଶିରୋ ଗାୟତ୍ରଂ ଚକ୍ଷୁଃ ସ୍ତୋମ ଆତ୍ମା ସାମ ତେ ତନୂର୍ବାମଦେବ୍ୟଂ ବୃହଦ୍ରଥନ୍ତରେ ପକ୍ଷୌ ଯଜ୍ଞାୟଜ୍ଞିୟଂ ପୁଚ୍ଛଂ ଛନ୍ଦାଂସ୍ୟଙ୍ଗାନି ଧିଷ୍ଣିୟା ଶଫା ଯଜୂଂଷି ନାମ ।"

ବିଷ୍ଣୁଙ୍କୁ ବେଦ ବହନ କରେ । ବେଦରେ ତାଙ୍କ ମହିମା ପ୍ରତିପାଦିତ । ତେଣୁ ବେଦ ବିଷ୍ଣୁଙ୍କ ବାହନ, ସେହି ବେଦ ହିଁ ଗରୁଡ଼; ଏହାର ଏହି ଆଧ୍ୟାତ୍ମିକ ଅର୍ଥ ହୋଇପାରେ ଯେ, ଅଷ୍ଟପାଟବଂଶୀ—(ତ୍ରିଗୁଣମୟ ବିଷ୍ଣୁଙ୍କ ଐଶ୍ୱର୍ଯ୍ୟମୟୀ ଅଷ୍ଟଶକ୍ତି)—ବେଦକୁ ଆଶ୍ରୟ କରି ଭଗବାନ ଶ୍ରୀକୃଷ୍ଣଚନ୍ଦ୍ରଙ୍କର ନିତ୍ୟ ପରିକର ସହ ମର୍ତ୍ତ୍ୟନିତ୍ୟଲୀଳା ଦର୍ଶନ କରିବାରେ ସମର୍ଥ ହୋଇଥିଲେ । କିନ୍ତୁ ରୁକ୍ମିଣୀସହ ବାସୁଦେବ ବେଦମୟ ଗରୁଡ଼ ପୃଷ୍ଠରେ ଯାଇ ନିର୍ବେଦପୁରୁଷ ପରମାତ୍ମା ଭଗବାନ କୃଷ୍ଣଚନ୍ଦ୍ରଙ୍କର ଗୋଲୋକସ୍ଥିତ ଧାମର ନିତ୍ୟଲୀଳା ଦର୍ଶନ କରିବାରେ ଅସମର୍ଥ ହୋଇଥିଲେ । କୃଷ୍ଣଚନ୍ଦ୍ରଙ୍କର ଲୀଳାର ମହତ୍ତ୍ୱ ବେଦାତୀତ, ଏହା ଭାଗବତର ବ୍ରହ୍ମସ୍ତୁତିରୁ ପ୍ରତିପାଦିତ ।

କୃଷ୍ଣଚନ୍ଦ୍ରଙ୍କର ଲୀଳାର ବଂଶୀ ବଂଶନିର୍ମିତ, ଏହାର ନାମ ଆନନ୍ଦନୀ ।

**ବଂଶୀ ।** ବ୍ରଜର ଲୀଳାର ଅପ୍ରକଟ କାଳରେ ଏ ବଂଶୀ ଗୋଲୋକକୃଷ୍ଣଙ୍କ ହସ୍ତରେ ନ୍ୟସ୍ତ ଥାଏ ।

ଏକବିଂଶ ଛାନ୍ଦରେ କବି ଶ୍ରୀକୃଷ୍ଣଙ୍କ ମୁଖରେ କହିଅଛନ୍ତି—
ଆମ୍ଭେ ନାରାୟଣ ଅଟୁଁ......ମନୋହାରୀ—୨୧।୮

**ବ୍ରହ୍ମା, ବିଷ୍ଣୁ ଓ ଶିବଙ୍କ ଓ ତତ୍ପତ୍ନୀମାନଙ୍କ ମଧ୍ୟରେ ଅଭେଦତ୍ୱ ତଥା ଗୁଣମୟତ୍ୱ ।**

ବ୍ରହ୍ମା, ବିଷ୍ଣୁ ଓ ଶିବଙ୍କର ଅଭେଦତ୍ୱ ପୁରାଣମାନଙ୍କରେ କଥିତ । ବିଷ୍ଣୁ ଓ ଶିବ ବ୍ରହ୍ମରୂପରେ ବୈଷ୍ଣବ ଓ ଶୈବପୁରାଣରେ ନିରୂପିତ । ବ୍ରହ୍ମା, ବିଷ୍ଣୁ ଓ ଶିବ ସତ୍ତ୍ୱ, ରଜ ଓ ତମଗୁଣର ଅଧିଷ୍ଠାତୃଦେବ ଓ ଭଗବାନଙ୍କ ଗୁଣାବତାରରୂପେ ଗୃହୀତ । ଦ୍ୱାରକାର କୃଷ୍ଣ ବାସୁଦେବ ସତ୍ତ୍ୱଗୁଣରେ ନାରାୟଣ, ରଜଗୁଣରେ ବ୍ରହ୍ମା ଓ ତମଗୁଣରେ ଶିବ ଅଟନ୍ତି । ଲକ୍ଷ୍ମୀ, ପାର୍ବତୀ ଓ ସାବିତ୍ରୀ ମଧ୍ୟ ଗୁଣମୟୀ ଏବଂ ସେହି ଦେବ-ତ୍ରିତୟଙ୍କର ପତ୍ନୀ ଓ ତ୍ରିପୁରବନ୍ଦ୍ୟା ମହାଲକ୍ଷ୍ମୀ ରୁକ୍ମଣୀଙ୍କ ଅଂଶ ବା ଭିନ୍ନରୂପ ।

ଯେପରି ଅବତାରଗଣ ଭଗବାନ ଶ୍ରୀକୃଷ୍ଣଙ୍କର ଅଂଶ ବିଭୂତି ("ଏତେ-ଚାଂଶକଳାଃ ପୁଂସଃ କୃଷ୍ଣସ୍ତୁ ଭଗବାନ୍ ସ୍ୱୟଂ" ଭାଗବତ) ସେହିପରି ମତ୍ସ୍ୟ, କଚ୍ଛପ, ବରାହ, ନୃସିଂହ, ବାମନ ଓ କଲ୍କୀଙ୍କ କାନ୍ତା ଲକ୍ଷ୍ମୀ ମହାଲକ୍ଷ୍ମୀଙ୍କର ଅଂଶ । ରାମଙ୍କ ପତ୍ନୀ ସୀତା ଓ ବଳରାମଙ୍କ କାନ୍ତା ରେବତୀ ମଧ୍ୟ ମହା-ଲକ୍ଷ୍ମୀଙ୍କ ଅଂଶ । ପର୍ଶୁରାମ ଏକ, ବ୍ରହ୍ମଚାରୀ; ତାଙ୍କ ଶକ୍ତି ତାଙ୍କଠାରୁ ଅଭେଦ । ବୁଦ୍ଧଙ୍କର ମଧ୍ୟ ତଦ୍ରୂପ । ଭାର୍ଗବତନ୍ତ୍ରେ :—

"ଶକ୍ତିଶକ୍ତିମତୋଶ୍ଚାପି ନ ବିଭେଦଃ କଥଞ୍ଚନ ।
ଅବିଭିନ୍ନୋପି ସ୍ୱେଚ୍ଛାଦଶଦୈରପି ବିଭିଦ୍ୟତେ ।"

ପୁନଶ୍ଚ କବି ଶ୍ରୀକୃଷ୍ଣଙ୍କୁ ଶ୍ରୁତି-ବେଦ, ରାଧାଙ୍କୁ ପ୍ରୀତି ଓ ରୁକ୍ମଣୀଙ୍କୁ ରତିରୂପେ ବର୍ଣ୍ଣନା କରି ଶ୍ରୁତିରୁ ପ୍ରୀତିର ଜନ୍ମ ଓ ପ୍ରୀତିରୁ ରତିର ଉତ୍ପତ୍ତି-ପ୍ରସ୍ତାବନାରେ କୃଷ୍ଣଚନ୍ଦ୍ରଙ୍କ ଅଙ୍ଗରୁ ରାଧାଙ୍କ ଜନ୍ମ ଓ ରାଧାଙ୍କ ଅଂଶରୁ

ରୁକ୍ମିଣୀଙ୍କର ଜନ୍ମ ପ୍ରତିପାଦିତ କରି ପୁରାଣ ବଚନ ସମର୍ଥନ କରିଅଛନ୍ତି । ପୁନରପି ସେ କୃଷ୍ଣଚନ୍ଦ୍ରଙ୍କୁ ପରମ, ରାଧାଙ୍କୁ ଚିନ୍ମୟୀପ୍ରକୃତି ଓ ରୁକ୍ମିଣୀଙ୍କୁ ଜୀବରୂପେ ଅଭିହିତ କରି ବେଦାନ୍ତର ଦ୍ୱୈତମତକୁ ସଂରକ୍ଷଣ କରିଅଛନ୍ତି * ।

ଦ୍ୱାବିଂଶ ସ୍କନ୍ଦରେ ଅନେକ ପୁରର ମଧ୍ୟ ଦେଇ ମର୍ତ୍ତ୍ୟରୁ ବାସୁଦେବ ଶ୍ରୀକୃଷ୍ଣଙ୍କର ରୁକ୍ମିଣୀଙ୍କ ସହିତ ଯେଉଁ ଗୋଲକଧାମ ଯାତ୍ରା ବର୍ଣ୍ଣିତ, ତାହା ସାଧାରଣ ପାଠକଙ୍କୁ ନିତାନ୍ତ ଅଯୁକ୍ତ, କ୍ରମଶୂନ୍ୟ ଓ ପୁନରୁକ୍ତିରୂପେ ପ୍ରତୀୟମାନ ହୋଇପାରେ । କିନ୍ତୁ ଦର୍ଶନ, ପୁରାଣ ଓ ଶାସ୍ତ୍ରାଦି ଶ୍ରମସ୍ୱୀକାର କରି ଆଲୋଡ଼ନ କଲେ ଭକ୍ତକବିଙ୍କ ବିଶାଳବସ୍ତୁଦର୍ଶିତା ସୁସ୍ପଷ୍ଟ ପ୍ରତିଭାତ ହେବ ।

ପ୍ରତ୍ୟେକ ପୁରରେ କୃଷ୍ଣଚନ୍ଦ୍ରଙ୍କର ଅବତାରମାନ ବିରାଜମାନ ।
ମହାଭୂତମାନଙ୍କର ପଞ୍ଚୀକରଣରେ ଜଗତର
**ପିଣ୍ଡବ୍ରହ୍ମାଣ୍ଡରେ** ଉତ୍ପତ୍ତି (ପଞ୍ଚଦଶୀ) । ସେହି ଜଗତକୁ ଅତିକ୍ରମ
**ପୁରମାନଙ୍କ ଅବସ୍ଥିତି** କରି ପଞ୍ଚଭୂତର ★ ମଧ୍ୟ ଦେଇ କୃଷ୍ଣ ରୁକ୍ମିଣୀସହ
ତମଃପ୍ରଧାନା ପ୍ରକୃତି ବା ତାମସ ଅହଙ୍କାରରେ
(ଯାହା ସ୍ଥୂଳ ଶରୀରର ଆଧିଭୌତିକ ପ୍ରକୃତିର ମୂଳକାରଣ) ପ୍ରବେଶ କଲେ । ତଦନନ୍ତର ରାଜସ ଅହଙ୍କାରରବିକୃତି—କ୍ରିୟାଶକ୍ତି ପ୍ରାଣ, ଦଶଇନ୍ଦ୍ରିୟ ★ ଓ ଜ୍ଞାନଶକ୍ତି ବୁଦ୍ଧି:-ଏମାନଙ୍କ ପୁର ଲଙ୍ଘି ସାତ୍ତ୍ୱିକ ଅହଂକାରର ବିକୃତି ଯେ ମନ ତାହା ମଧ୍ୟ ଦେଇ ଅବିକୃତ ମୂଳ ଅହଙ୍କାର (ରଜସତ୍ତ୍ୱୋପବୃଂହିତ ମହ-

---

* ଶ୍ରୀକୃଷ୍ଣ—ପରମ; ରାଧା—ଜୀବ; ରୁକ୍ମିଣୀ—ପ୍ରକୃତି (ସାଧାରଣ ଅର୍ଥରେ) ଏ ଅର୍ଥ ମଧ୍ୟ ହୋଇପାରେ । "ଜୀବ ରାଧା ପରମ କୃଷ୍ଣ ଏ ଦୁହିଙ୍କ ବାସ । * * * ନିଗୂଢ଼ ପୀରତିରେ ଯେ ଅଙ୍ଗ ମିଶାମିଶି । ରାଧାର ଅଙ୍ଗେ କୃଷ୍ଣର ଅଙ୍ଗହିଁ ନ ମିଶି ।"

ପୁନଶ୍ଚ:—"ରାଧିକା ଜୀବ, ପରମ କୃଷ୍ଣ ଅଟନ୍ତି"—ଦ୍ୱାରିକା ଦାସଙ୍କ ଶିବପୁରାଣର ଗୋପଲୀଳା ବର୍ଣ୍ଣନା ।

★ ଗ୍ରନ୍ଥରେ କେବଳ ଜଳ ଓ ଅନଳଦ୍ୱାରା ଅନ୍ୟାନ୍ୟ ମହାଭୂତମାନେ ସୂଚିତ ।

★ କବି ଏହାର ଉଲ୍ଲେଖ କରିନାହାନ୍ତି ।

*

ତତ୍ତ୍ୱରୁ ଦ୍ରବ୍ୟ ଜ୍ଞାନକ୍ରିୟାତ୍ମକ ତମୋଗୁଣମୟ ଯେ ତତ୍ତ୍ୱ ଉଦ୍ଭୂତ ହୁଏ ତାହାର ନାମ ଅହଂକାର ।) ଅତିକ୍ରମ କଲେ ୧୨ । ତତ୍ପରେ ସେହି ପ୍ରକୃତିର ଆଦି ଜନନୀ ବିଷ୍ଣୁଙ୍କ ମାୟା ବୈଷ୍ଣବୀ ଶଙ୍ଖ ଚକ୍ର ଗଦା ପଦ୍ମଧାରିଣୀ ଦୁର୍ଗା—ତାଙ୍କର ଅବସ୍ଥିତି ଅର୍ଦ୍ଧମାତ୍ରା ନିକଟରେ । ତଦନନ୍ତର ତଦୁପରିସ୍ଥ ସତ୍ତ୍ୱପ୍ରଧାନ । ବିରାଟ-ପ୍ରକୃତି (ଯାହାକୁ ମହତ୍ତତ୍ତ୍ୱ ବା ପ୍ରଥମ ବୁଦ୍ଧି ଶକ୍ତି କୁହାଯାଏ) । ଜ୍ଞାନଶକ୍ତି ଦିଶାଙ୍ଗୁଳମାତ୍ରାବସ୍ଥିବା ଅଥଚ ଦଶଦିଗ୍‌ବ୍ୟାପିନୀ ବିରଜା ଏହି ସତ୍ତ୍ୱ ପ୍ରକୃତିଙ୍କର ଶକ୍ତି । ସହସ୍ରଶୀର୍ଷା ଦେବପୁରୁଷ ବିରାଟଙ୍କରହିଁ ଏହିଁ ଅଧିଷ୍ଠାନ । ଏହିଠାରୁ ବ୍ରହ୍ମାଙ୍କ ବେଦର ପ୍ରସୂତି, କାରଣ ବ୍ରହ୍ମା ଏହି ବିରାଟ ପୁରୁଷଙ୍କ ନାଭିକମଳରୁ ଜାତ ହୋଇଅଛନ୍ତି । ଏହି ବ୍ରହ୍ମ ଲୋକର ଊର୍ଦ୍ଧ୍ୱଭାଗରେ ଅର୍ଥାତ୍ ଅର୍ଦ୍ଧମାତ୍ରାର ଉପର ଭାଗରେ ଯେ ସକଳ ପୁର ବିଦ୍ୟମାନ, ତାହା କବିଙ୍କ ଉକ୍ତିରେ 'ନିଗମ,ନିତ୍ୟ, ଅଗମ୍ୟ, ଅଟେ' । ସେ ମଣ୍ଡଳମାନ ଭଗବାନଙ୍କ ଚିତ୍‌ଶକ୍ତିର ଆଶ୍ରିତ । ଏ ସମସ୍ତ ପାରହୋଇ ନିଗମ ମଧ୍ୟରେ ପ୍ରଥମତଃ ଲିଙ୍ଗରୂପୀ ଶିବଙ୍କ ପୁରରେ ପ୍ରବେଶ କଲେ । ଶିବ ଏଠାରେ ସତ୍ତ୍ୱମୟ । ଏହାଙ୍କ ଲୋଚନାନଳରୁ ସୂର୍ଯ୍ୟ ଚନ୍ଦ୍ରାଦି ଜ୍ୟୋତିଷ୍କ ବର୍ଗର ସୃଷ୍ଟି । ଏ ରଜସ୍ତମୋଗୁଣଦୋଷରହିତ ହେତୁ ପ୍ରଳୟଙ୍କର ନୁହନ୍ତି । ତଦନନ୍ତର କୃଷ୍ଣମୂର୍ତ୍ତିଙ୍କୁ ବ୍ରହ୍ମରୂପରେ ଦର୍ଶନ କଲେ (ଏଠାରେ କୃଷ୍ଣ ନିର୍ଗୁଣ ବ୍ରହ୍ମ ଯେଉଁ ବ୍ରହ୍ମ ଭଗବାନ କୃଷ୍ଣଚନ୍ଦ୍ରଙ୍କର ପ୍ରଭା ସେହି ବ୍ରହ୍ମ ଏହିଠାରେ ଅବସ୍ଥିତ । ଏହିମତେ ଅନେକ ପୁର ଅତିକ୍ରମ କରି ବାସୁଦେବ ମହାବୈକୁଣ୍ଠର ସପ୍ତାବରଣସ୍ଥ ବିଭୂତି ମଣ୍ଡଳରେ ଉପସ୍ଥିତ ହେଲେ । ବିଭୂତି ସତ୍ତ୍ୱାତ୍ମିକା ଓ ଚିନ୍ମୟୀ । ଏହି ବିଭୂତି ବା ଐଶ୍ୱର୍ଯ୍ୟର ଷୋଡ଼ଶକଳା ବା ମହିମାର ପ୍ରଚୁର ଅଛି । ଯଥା—ଶ୍ରୀ, ଭୂ, କୀର୍ତ୍ତି, ଇଲା, ଲୀଳା, କାନ୍ତି, ବିଦ୍ୟା, ବିମଳା, ଉତ୍କର୍ଷିଣୀ, ଜ୍ଞାନା, କ୍ରିୟା, ଯୋଗା, ପ୍ରହ୍ୱୀ, ସତ୍ୟା ଈଶାନା ଓ ଅନୁଗ୍ରହା । ବିଭୂତିମଣ୍ଡଳ ପରେ ଗଣମଣ୍ଡଳ:—ବିଷ୍ୱକ୍‌ସେନ ଭବନ ପରେ ଅନନ୍ତ ଭବନ ଅତିକ୍ରମ କରି

---

୧୨ ଭାଗବତ ଦ୍ୱିତୀୟସ୍କନ୍ଧ ୫ମ ଅଧ୍ୟାୟ ଦ୍ରଷ୍ଟବ୍ୟ ।

ପଞ୍ଚୀକରଣ—କ୍ଷିତି, ଆପତେଜାଦିର ପ୍ରାକୃତିକ ସଂଯୋଗ । ଯଥା : କ୍ଷିତ୍ୟାଦିରୁ ଏକର $\frac{1}{2}$ + ଅନ୍ୟାନ୍ୟମାନଙ୍କର ୧ ଯୋଗ—$\frac{1}{2}+\frac{1}{8}+\frac{1}{8}+\frac{1}{8}+\frac{1}{8}=$ ୧;

ଗରୁଡ଼ ଭୁବନରେ ଉପସ୍ଥିତ ହେଲେ (ପୁରାଣ ମାନଙ୍କରେ ଗରୁଡ଼, ବିଷ୍ଵକ ସେନାଦି ମହା ବୈକୁଣ୍ଠର ଆବରଣ ଦେବତା ରୂପେ କଥିତ) । ଏଠାରେ ମହାବୈକୁଣ୍ଠ ଭୁବନ ଚଣ୍ଡ, ପ୍ରଚଣ୍ଡ, ଭଦ୍ର, ସୁଭଦ୍ର, ଜୟ, ବିଜୟ ଧାତା, ବିଧାତା ନାମକ ଅଷ୍ଟ ଦ୍ଵାରପାଳଙ୍କ ଦ୍ଵାରା ପରିରକ୍ଷିତ । ଦ୍ଵାରୀମାନେ ବାସୁଦେବଙ୍କ ଠାରେ ଶଙ୍ଖ-ଚକ୍ର-ଗଦା-ପଦ୍ମାଦି ବୈଷ୍ଣବ ଚିହ୍ନମାନ ଦେଖି ତାହାଙ୍କୁ ବୈଷ୍ଣବ ଧାମରେ ପ୍ରବେଶ ନିମନ୍ତେ ଅନୁମତି ଦେଲେ । ବୈକୁଣ୍ଠ ବତିଶଦଳ ବିଶିଷ୍ଟ ଏହି ବତିଶଦଳରେ ଭଗବାନଙ୍କ ବତିଶ ଅବତାର ବିଦ୍ୟମାନ, ଯଥା—ଚତୁଃସନ, ବରାହ, ନାରଦ, ନର, ନାରାୟଣ, କପିଳ ଦତ୍ତାତ୍ରେୟ ଯଜ୍ଞ, ଋଷଭ, ପୃଥୁ, ମତ୍ସ୍ୟ, କୂର୍ମ, ଧନ୍ଵନ୍ତରୀ, ମୋହିନୀ ନରସିଂହ, ବାମନ, ପରଶୁରାମ, ବ୍ୟାସ, ରାମ-ଚନ୍ଦ୍ର, ବଳରାମ, କୃଷ୍ଣ, ବୁଦ୍ଧ, କଲ୍କୀ, ହଂସ, ଧ୍ରୁବପ୍ରିୟ ହୟଶୀର୍ଷ, ସଙ୍କର୍ଷଣ, ପ୍ରଦ୍ୟୁମ୍ନ, ଅନିରୁଦ୍ଧ, ବ୍ରହ୍ମା, ବିଷ୍ଣୁ, ଶିବ । ତଦନନ୍ତର ଦଶଦଳରେ ଦଶଦିଗ-ପାଳ-ଇନ୍ଦ୍ର, ଈଶ୍ଵର, ବାୟୁ ଯମ, ଅଗ୍ନି ବରୁଣ, କୁବେର, ନୈଋତ, ବ୍ରହ୍ମା ।

ମଧ୍ୟରେ ବତିଶଦଳ ବସଇ ଯାହାର । ବାହରେ ପୂରିମଧ୍ୟ ଦଶଦଳ ତାର ॥
ସେହିଠାରେ ଅଛନ୍ତି ଦଶଦିଗପାଳ । ଦ୍ଵାରକା ଦାସଙ୍କ ଶିବ ପୁରାଣ ॥

ଓ ଅନ୍ୟାନ୍ୟ ପାର୍ଶ୍ଵଦେବତାମାନେ ଅଛନ୍ତି । ଏହା ଦ୍ଵାରକା—ଉଦ୍ଧବ, ଅକ୍ରୂରଙ୍କର ମୂଳସ୍ଥାନ । ଏହିଠାରେ ଅଷ୍ଟପାଟବଂଶୀ ମଧ୍ୟ ଅଛନ୍ତି । ଏହାର ଚତୁର୍ଦ୍ଦିଗରେ ବାସୁଦେବ, ସଙ୍କର୍ଷଣ, ପ୍ରଦ୍ୟୁମ୍ନ ଓ ଅନିରୁଦ୍ଧ ଅଛନ୍ତି । ଏଠାରୁ ଗୋଲୋକର ପ୍ରାରମ୍ଭ—ଏହି ସ୍ଥାନରୁ ଗୋଲୋକର ନବ ଆବରଣର ଉପକ୍ରମ * । ପ୍ରଥମତଃ ବତିଶ ଉପବନବିଶିଷ୍ଟ ବତିଶଦଳ (୧) । ପ୍ରତ୍ୟେକ-ଦଳ ଭଗବାନଙ୍କ ବିଶେଷ ବିଶେଷ ଲୀଳାଦରଣରେ ଆବୃତ । ଇହାମଧ୍ୟରେ ଷୋଡ଼ଶ ବନବିଶିଷ୍ଟ ଷୋଡ଼ଶଦଳ । ପ୍ରତ୍ୟେକ ବନରେ ବିଶେଷ ବିଶେଷ ନିଗୂଢ଼ ବନଲୀଳାମାନଙ୍କର ଅବସ୍ଥିତି । ତନ୍ମଧ୍ୟରେ ଅଷ୍ଟଦଳ କଞ୍ଜ ବର୍ଣ୍ଣିତ ଦଳର ଲୀଳାମାନ ପଦ୍ମପୁରାଣ ଓ ଅଚ୍ୟୁତାନନ୍ଦ ମଧ୍ୟ ତାଙ୍କ ଶୂନ୍ୟସଂହିତାର ବିଧାତନ୍ତ୍ରାଦିର ଅନୁରୂପ । ଚତୁର୍ଥ ଅଧ୍ୟାୟରେ ତାହା ବର୍ଣ୍ଣନ କରିଅଛନ୍ତି ।

---

* ପୁରୁଷୋତ୍ତମ ତାପିନୀ ଓ ପଦ୍ମପୁରାଣ ମତେ ସପ୍ତାବରଣ ପିଣ୍ଡିକ ଶ୍ରୀଚନ୍ଦନଙ୍କ ବସନ୍ତରାସରେ ନବାବରଣ ବିଷୟ ଉଲ୍ଲେଖ ଅଛି । (ତ୍ରୟୋଦଶ ସର୍ଗ) ୧୧୩ ପୃଷ୍ଠା ।

୧:—କଦମ୍ବ ଖଣ୍ଡିକା ନନ୍ଦ ପଲାଶ ଅଶୋକାଦି ୩୨ ଉପବନ ।

ଯମୁନାପୁଲିନବନ କାଳିନ୍ଦୀର ହ୍ରଦ ।
ଅଷ୍ଟଦଳ ମଧ୍ୟେ ଦେଖ କଦମ୍ବର ଭେଦ ॥
ଉଁକାର ପାଖୁଡ଼ା ଏହି ବରଦ୍ବଣୀ ସ୍ଥାନ ।
ଏହି ଦଳ ମଧ୍ୟେ ବ୍ୟୋମାସୁରଟି ନିଧନ ॥
ଷଣ୍ଢାସୁର ବଧ ଶପଲବଧୀ ସ୍ଥାନ ଏହି ।
ଦ୍ୱାଦଶ ପାଖୁଡ଼ା ମଧ୍ୟେ ତ୍ରିଭଙ୍ଗରେ ଥାଇ ॥
ଯଜ୍ଞ ଅନ୍ନ ଭୋଜନଟି ଏହି ଯେ ଦଳରେ ।
ଖଣ୍ଡିତା ଲକ୍ଷଣ କୃଷ୍ଣ ରାଧିକା ସଙ୍ଗରେ ॥
ଇକାର ମାତ୍ରାକୁ ଦେଖ ଅର୍ଦ୍ଧମାତ୍ରା ସେହି ।
ଉତ୍‌କଣ୍ଠିତା ଲକ୍ଷଣଟି ଏହି ଦଳେ ରହି ॥
କଶୋଗ୍ନି ବାସକସଜ୍ଜା ଏହି ଦଳେ ସ୍ଥିତ ।
ଏହି ଦଳେ ପୂଜ ଗୋପୀ କୃଷ୍ଣ ଲଭେ ପତ ॥
ଏହିଦଳେ ଗୋପୀଙ୍କର ବସ୍ତ୍ର ଯେ ହରଣ ।
କଳହାନ୍ତରିତା ଦେଖ ଏହି ଯେ ଦଳେଣ ॥
ଅକାର ଦଳରେ ସିନା କେଶୀକଲେ ବଧ ।
ସ୍ୱାଧୀନଭର୍ତ୍ତୃକା ଏହି ଦଳରେ ପ୍ରସିଦ୍ଧ ॥
ମଧ୍ୟ ଦଳଟି ନିକୁଞ୍ଜକୁଟୀର ମଧ୍ୟରେ ।
ଅଭିସାରିକା ଲକ୍ଷଣ ଏହି ଯେ ଦଳରେ ॥
ଠାବେ ଠାବେ ବାସୁଦେବ ରୁକ୍ମିଣୀ ଯେ ଅଛି ।
ରାମ କାମ ଅନିରୁଦ୍ଧ ଏହିଠାରେ ଭେଦ ॥

ଶୂନ୍ୟସଂହିତା ॥

ଏହି ଅଷ୍ଟଦଳର ରାସଦ୍ୱାରରେ ରକ୍ଷକ ଶ୍ରୀ ଗୋପୀଶ୍ୱର ମହାଦେବ । ଏଠାରେ ସମସ୍ତେ ବିଷ୍ଣୁମୂର୍ତ୍ତି, ସ୍ଥାନେ ସ୍ଥାନେ ରୁକ୍ମିଣୀ ବାସୁଦେବରୂପୀ, ଲକ୍ଷ୍ମୀନାରାୟଣରୂପୀ. ରାଧାମାଧବରୂପୀ, ଏହା ମୂଳ ନିତ୍ୟସ୍ଥଳ ନୁହେଁ । କବିଙ୍କ ବର୍ଣ୍ଣନାର ସହିତ ଅଚ୍ୟୁତାନନ୍ଦ ବର୍ଣ୍ଣନାର କିପରି ସାମ୍ୟ ତାହା ଉଭୟଙ୍କୁ ମିଳାଇ ପଢ଼ିଲେ ଜଣାପଡ଼େ । ସେହି ନିତ୍ୟଧାମକୁ ଯିବା ନିମିତ୍ତ ବାସୁଦେବ କାଳିନ୍ଦୀ ପୁଳିନରେ ପ୍ରବେଶ ହେଲେ । କାଳିନ୍ଦୀ କାଳମାୟା; ନିତ୍ୟଧାମକୁ ବେଷ୍ଟନ କରି ତାହାଙ୍କର ସ୍ଥିତି । ବାସୁଦେବଙ୍କୁ ଦେଖି ବୈଷ୍ଣବୀମୂର୍ତ୍ତି କାଳମାୟା

ପଥ ଗ୍ରହଣ କଲେ । ସେଠାରୁ ଯାଇ ସେ ଅଷ୍ଟବଟ ନିକଟରେ ପ୍ରବେଶ ହେଲେ । ଏ ଆବରଣରେ ପଶ୍ଚିମଦ୍ୱାରରେ ପାରିଜାତ ତରୁମୂଳରେ ଆଦିମୂର୍ତ୍ତି ବାସୁଦେବ, ଉତ୍ତରଦ୍ୱାରରେ ଆଦି ସଙ୍କର୍ଷଣ, ପୂର୍ବଦ୍ୱାରରେ ଆଦି ପ୍ରଦ୍ୟୁମ୍ନ ଓ ଦକ୍ଷିଣ ଦ୍ୱାରରେ ଆଦି ଅନିରୁଦ୍ଧ ତହୁଁ ଗୋଲୋକମଣ୍ଡଳର ମୂଳ ନିତ୍ୟସ୍ଥଳରେ ବାସୁଦେବ ମୂର୍ତ୍ତି ନାହାନ୍ତି । କେବଳ ମାଧୁର୍ଯ୍ୟମୟ ରାଧାକୃଷ୍ଣ ଓ ଗୋପୀ । ରୁକ୍ମଣୀଙ୍କ ଅନୁରୋଧରେ ବାସୁଦେବ ନିତ୍ୟ ଗୋଲୋକଧାମର ସୁବର୍ଣ୍ଣମୟ ପ୍ରାଚୀରର ଦ୍ୱାରଦେଶରେ ଉପସ୍ଥିତ ହେଲେ * । ଏହି ସ୍ଥାନରେ ପ୍ରଧାନ ଦ୍ୱାରପାଳିକା ତ୍ରିପୁରେଶ୍ୱରୀ । ସେ ବାସୁଦେବଙ୍କୁ ପ୍ରବେଶ କରିବା ନିମିତ୍ତ ନିଷେଧ କଲେ ଏବଂ କହିଲେ, ନିତ୍ୟଧାମରେ ରୁକ୍ମଣୀଙ୍କର ପ୍ରବେଶ ନିଷିଦ୍ଧ । ବାସୁଦେବ ଶ୍ରୀକୃଷ୍ଣଙ୍କ ନାନାବିଧ ଅନୁରୋଧରେ ତ୍ରିପୁରା ତାଙ୍କୁ ମନ୍ତ୍ର ଦେଲେ ଏବଂ ମନ୍ତ୍ରୀ ରାଧାଙ୍କ ଦର୍ଶନଜନିତ ପୁଣ୍ୟରୁ ରୁକ୍ମଣୀ ମନ୍ତ୍ରସିଦ୍ଧିରେ ସମର୍ଥା ଏଣୁ ତାହାଙ୍କୁ ମନ୍ତ୍ର ଦେବା ନିମିତ୍ତ କୃଷ୍ଣଚନ୍ଦ୍ରଙ୍କୁ ଆଦେଶ ଦେଲେ । ତଦନନ୍ତରେ ଦ୍ୱାରକାକୁ ପ୍ରତ୍ୟାବର୍ତ୍ତି କରି ରୁକ୍ମଣୀ କୃଷ୍ଣଚନ୍ଦ୍ରଙ୍କଠାରୁ ମନ୍ତ୍ର ଗ୍ରହଣ କଲେ ଓ ନିଜେ ମନ୍ତ୍ରଦାନ କରି ଅଷ୍ଟପାଟବଂଶୀଙ୍କର ଗୁରୁ ହେଲେ ।

କବି—ଭକ୍ତ କବି ଦେବଦୁର୍ଲ୍ଲଭ ଦାସ ଜଣେ ପ୍ରକୃତ ବୈଷ୍ଣବ ଥିଲେ ।

**କବି ଦେବଦୁର୍ଲ୍ଲଭ ।** ସେ ଗ୍ରନ୍ଥ ଶେଷରେ ତାଙ୍କର ପରିଚୟ ଦେଇ ନାହାନ୍ତି । ସେ ତାଙ୍କର ସ୍ତବରେ...ଅହଂକାର ଶୂନ୍ୟତାରେ ଗ୍ରନ୍ଥର ଉପସଂହାର କରିଅଛନ୍ତି । ସେ ଯେତେକ କଥା କହିଅଛନ୍ତି, ତାହା ତାଙ୍କ ହୃଦୟର ମନ୍ଦିରର ପରିଚୟ ଦିଏ । ସେ ସତ୍ୟ ଓ ଧର୍ମପ୍ରାଣ ଥିଲେ । ସେ ଯେ ଜଣେ ଗୃହୀ ବୈଷ୍ଣବ ଥିଲେ ତାହା ତାଙ୍କ ଉପସଂହାରରୁ ସୁନ୍ଦରସ୍ପଷ୍ଟ ପରିଜ୍ଞାତ ହୁଏ । ତାଙ୍କର ଆର୍ଥିକ ଅବସ୍ଥା, ଆବଶ୍ୟକ ଅଭାବମାନ ପୂରଣ କରିବାରେ ଉପଯୋଗୀ ଥିଲା ପରି ତାଙ୍କ ଉକ୍ତିରୁ

* ପୁରୁଷୋତ୍ତମ ତାପିନୀ ଦ୍ରଷ୍ଟବ୍ୟ, ଏହି ନିତ୍ୟଧାମକୁ ଅଭିମନ୍ୟୁ ବିଦଗ୍ଧ ଚନ୍ତାମଣିରେ ୫୯ ଗ୍ରନ୍ଥରେ ବର୍ଣ୍ଣନ କରିଅଛନ୍ତି । ସେ ବର୍ଣ୍ଣନ କରି ଶେଷରେ କହିଅଛନ୍ତି "ତାପିନୀ ପ୍ରବାଦମାନେ ଜାଣିବେ ଯେ ଅନ୍ୟମାନେ ମାତ୍ର ଦିଗ ଦର୍ଶନ ଭାବେ କଲି କଥନ" । ଦେବଦୁର୍ଲ୍ଲଭ ମଧ୍ୟ ସେହିପରି ସମ୍ପୂର୍ଣ୍ଣ ବିବରଣ ନ ଦେଇ ଠିକେ ଠିକେ କହିଅଛନ୍ତି ।

ଜଣାପଡ଼ୁନାହିଁ । ସଂସାରର ପ୍ରବୃତ୍ତିରେ କ୍ଷୁବ୍ଧ ହୋଇ ସେ ବରଂ ସଙ୍ଗହୀନ ନିର୍ଜ୍ଜନ ବାସରେ ସତ୍ ଓ ପବିତ୍ର ଜୀବନ ଯାପନ କରିବାକୁ ଶ୍ରେୟ ମଣିଥିଲେ । ସତ୍ୟପ୍ରାଣ ଲୋକ ଲୋକପ୍ରିୟ ହୋଇପାରେ କିନ୍ତୁ ସେହି ସତ୍ୟପ୍ରାଣତା ଅର୍ଥ-ଶୂନ୍ୟ, ଯେତେବେଳେ ତାହାର ସଞ୍ଚାର ଅନ୍ୟ ପ୍ରାଣରେ ସମ୍ଭବେ ନାହିଁ । ନିଜର ପ୍ରାଣ ବାକ୍ୟତଃ କାର୍ଯ୍ୟତଃ ଉପଦେଶରେ ଅନ୍ୟତ୍ର ନ ଦେଖି ସେ ଧ୍ବଂସ ନିରତ ସାଧାରଣ ମାନବସମାଜ ପରିହାର କରିଥିଲେ ବୋଲି ପ୍ରତୀୟମାନ ହୁଏ । କବିଙ୍କ ଯୁଗର ଉତ୍କଳରେ ବୋଧହୁଏ ପ୍ରବଳ ସମରବହ୍ନି ଜଳୁଥିଲା ଓ ତଜ୍ଜନିତ ନରଧ୍ବଂସ କବିଙ୍କ ହୃଦୟରେ ଦାରୁଣ ଆଘାତ ପ୍ରଦାନ କରିଥିଲା ।

"ସବୁଙ୍କର ସଙ୍ଗ ବୁଦ୍ଧି ଯେବେ ସେ ହୁଅନ୍ତା
ଖଡ଼ଗ କମାଣ ବାଣ କପାଇଁ ବହନ୍ତା ।
ଏକକୁ ଆରେକ ନ ଚିହ୍ନନ୍ତି ମଉଷ୍ଠେଲେ
ତେଣୁ ମରିମରି ହୋଇ ମରନ୍ତି ସକଳେ ।"

୨୪ ଗ୍ରନ୍ଥ, ୩୭ ପଦ ।

ଏହା କବିଙ୍କଙ୍କ ହୃଦୟ କଥା ।

ସେ ସାଧକ ଥିଲେ, ଧର୍ମରେ ଅନୁରାଗୀ ଥିଲେ । ଉପସଂହାର ପାଠ କଲେ ପ୍ରତୀୟମାନ ହୁଏ, ତାଙ୍କ ସାଧନା ଓ ଧର୍ମ୍ମବିଶ୍ବାସର ପ୍ରତିକୂଳର ସେ ଦ୍ବେଷୀ ଥିଲେ । ସେ ଉତ୍କଳର ଯେଉଁ ଅଞ୍ଚଳର ଲୋକ ଥିଲେ, ତାହା ଜାଣିବା କଠିନ । କିନ୍ତୁ କବିଙ୍କ ପୁରୁଷୋତ୍ତମ କ୍ଷେତ୍ରରେ ଭୌଗୋଳିକ ଜ୍ଞାନ, ସମୁଦ୍ରର ବର୍ଣ୍ଣନ ଓ ପୁରୀ ପ୍ରଚଳିତ ବିଶିଷ୍ଟ ମିଷ୍ଟାନ୍ନାଦି ଖାଦ୍ୟପେୟର ଉଲ୍ଲେଖରୁ ଅନୁମିତ ହୁଏ ଯେ ସେ ବହୁକାଳ କ୍ଷେତ୍ରବାସୀ ଥିଲେ । କବିଙ୍କ ଯୁଗର ବିଷୟ ପୂର୍ବରୁ କଥିତ ହୋଇଅଛି ।

ଯେଉଁ ଶକ୍ତିଦ୍ବାରା ପଦାର୍ଥର ତତ୍ତ୍ବ ଜଣାଯାଏ ତାହାର ନାମ ପ୍ରତିଭା—

**ପ୍ରତିଭା ।** ପ୍ରକୃତିର ବାହ୍ୟ ଓ ଅନ୍ତର ରୂପ ଯାହାର ସମ୍ମୁଖରେ ଉନ୍ମୋଚିତ ଓ ଯାହା ତାଙ୍କର ଧର୍ମ୍ମ ଗ୍ରହଣ କରିବାରେ ସମର୍ଥ ତାହାହିଁ ପ୍ରତିଭା । କବିଙ୍କ ଦୃଷ୍ଟି ସମକ୍ଷରେ କେବଳ ଯେ ଜଡ଼ ପ୍ରକୃତି ଅବସ୍ଥାପିତ ଥିଲା ତାହା ନୁହେଁ, ସେ ଚିତ୍ ପ୍ରକୃତିରେ ମଧ୍ୟ ବିଳାସୀ ଥିଲେ । ବାସ୍ତବ ପ୍ରକୃତିର

ବର୍ଣ୍ଣନାରେ ଯେ ଶବ୍ଦର ସୁନ୍ଦର ପରିପାଟୀ ଓ ମଧୁର ପଦଲାଳିତ୍ୟ ତତ୍ର ପ୍ରକୃତର ବିସ୍ତାର ନିସ୍ତାରରେ ମଧ୍ୟ ତାହାର ସେହିପରି ଅପୂର୍ବ ସୌନ୍ଦର୍ଯ୍ୟ ଓ ମଧୁର ସଂଯୋଜନା । ପ୍ରତିଭା ବଳରେ କବି ବାହ୍ୟ ପ୍ରକୃତି ବର୍ଣ୍ଣନାରେ କିପରି ସିଦ୍ଧହସ୍ତ ତହିଁର ନିଦର୍ଶନ ତାଙ୍କ ୧୬ଶ ଗ୍ରନ୍ଥର ଋତୁବର୍ଣ୍ଣନ ଓ ୧୯ଶ ଗ୍ରନ୍ଥର ରାସଲୀଳା ବର୍ଣ୍ଣନ । ୮, ୨୨ ଓ ୨୩ ଗ୍ରନ୍ଥମାନଙ୍କରେ ଚିତ୍ରପ୍ରକୃତି ବିସ୍ତାର ନିସ୍ତାରରେ କବିଙ୍କ ପ୍ରତିଭାଜନିତ କୁଶଳତା ପରିସ୍ଫୁଟ ।

**ଶାସ୍ତ୍ରଦର୍ଶିତା ।** କବିଙ୍କ ବହୁଶାସ୍ତ୍ରଦର୍ଶିତା ନିଷ୍ପ୍ରବନ୍ଧ ବିଭିନ୍ନ ପ୍ରସଙ୍ଗରେ କଥିତ ହୋଇଅଛି । ପୁରାଣ, ଦର୍ଶନ, ସ୍ମୃତି, ଯୋଗ, ତନ୍ତ୍ର ଓ ସଙ୍ଗୀତ ପ୍ରଭୃତି ବିଦ୍ୟାରେ କବିଙ୍କର ପ୍ରାଗଲ୍ଭ୍ୟ ଥିଲା । ଏହି ଶାସ୍ତ୍ରମାନଙ୍କର ତତ୍ତ୍ୱୋପଲବ୍ଧି କବିଙ୍କ ଭକ୍ତିର ଓ ଲବ୍ଧତତ୍ତ୍ୱମାନଙ୍କର ସ୍ୱକାବ୍ୟରେ ସମୀଚୀନ ସଂଯୋଜନ କବିଙ୍କ ପ୍ରତିଭାର ନିଦର୍ଶନ । କଳ୍ପନାଶକ୍ତି ଓ ଭାବନାଶକ୍ତି ପ୍ରତିଭାର ଅନ୍ତରଙ୍ଗା ସଖୀ । କବିଙ୍କର ଏ ଶକ୍ତି ଦ୍ୱୟର ବିଶ୍ୱର ଯଥା ସ୍ଥାନରେ କରାଯାଇଅଛି ।

**ଚରିତ୍ରଚିତ୍ରଣ ଓ ଔଚିତ୍ୟଜ୍ଞାନ ।** ରୁକ୍ମିଣୀଙ୍କର ଅଭିମାନ; ଜାମ୍ବବତୀଙ୍କର ଈର୍ଷ୍ୟା; ଗାନ୍ଧେରୀ ମାୟା କୁମାରୀମାନଙ୍କର ଜାତ୍ୟାନୁରୂପ ବ୍ୟବହାର ଓ କାର୍ଯ୍ୟକୁଶଳତା; ଗରୁଡ଼ର ଆଜ୍ଞାନୁବର୍ତ୍ତିତା ଓ ମର୍ଯ୍ୟାଦା ଜ୍ଞାନ; କୃଷ୍ଣ ଦର୍ଶନରେ ରାଧାଙ୍କ ମାନ ଓ କୃଷ୍ଣ ବଚନରେ ସାନ୍ତ୍ୱନା ପ୍ରାପ୍ତି; ଅଷ୍ଟପାଟବଂଶୀଙ୍କ ଦର୍ଶନ ନିମନ୍ତେ ରାଧାଙ୍କର ଉତ୍କଣ୍ଠା ପ୍ରକାଶ; ରାଧାଙ୍କର ରୁକ୍ମିଣୀଙ୍କ ପ୍ରତି ଉପଦେଶ ଗର୍ଭିତ ବଚନ, ରାଧାଙ୍କର ରୁକ୍ମିଣୀ ଓ ଅନ୍ୟାନ୍ୟ ପାଟବଂଶୀ-ମାନଙ୍କ ନିମନ୍ତେ କୃଷ୍ଣଙ୍କ ଅତି ଉଚ୍ଚଭାବଦ୍ୟୋତକ ଓ ଆଦର୍ଶମୟ ଅନୁରୋଧ; ଦ୍ୱାରକା ପ୍ରତ୍ୟାବର୍ତ୍ତନ ଅବସରରେ ରାଧାଙ୍କ ମୁଖରେ ଦୁଃଖ ପ୍ରକାଶ କରାଇବାରେ ଆଦର୍ଶ ନରଜୀବନର ଦୃଷ୍ଟାନ୍ତ ପ୍ରଦର୍ଶନ; ଗରୁଡ଼ର ରୂପବର୍ଣ୍ଣନ ଓ ତତ୍ପ୍ରତି ଗୋପୀମାନଙ୍କର ଅନୁରୋଧ; ଦ୍ୱାରକା ପ୍ରତ୍ୟାବର୍ତ୍ତନ ପରେ ରୁକ୍ମିଣୀଙ୍କର ହୀନତା ଓ ଦୀନତା ପ୍ରଖ୍ୟାପନ ଓ ଅନ୍ୟାନ୍ୟ ବିଷୟମାନ କବିଙ୍କ ସିଦ୍ଧଚରିତ୍ର ଚିତ୍ରଣ ଓ ଔଚିତ୍ୟଜ୍ଞାନର ଜ୍ୱଳନ୍ତ ନିଦର୍ଶନ ।

କବିଙ୍କର ସୌନ୍ଦର୍ଯ୍ୟଜ୍ଞାନ ଅନନ୍ୟସାଧାରଣ । ରାଧା, କୃଷ୍ଣ ଓ ଗରୁଡ଼ର ରୂପବର୍ଣ୍ଣନ କବିଙ୍କର ସୂକ୍ଷ୍ମଦୃଷ୍ଟି ଓ

**ସୌନ୍ଦର୍ଯ୍ୟ ଜ୍ଞାନ ।** ସିଦ୍ଧହସ୍ତତାର ପରିଚାୟକ । ୧୮ଶ ଛାନ୍ଦ ବର୍ଣ୍ଣିତ ପୁଷ୍ପଚୟନ କାଳରେ ଗୋପୀମାନଙ୍କର ସଙ୍ଗୀତ ଗତ କବି ଅତ୍ୟନ୍ତ ନିପୁଣତା ସହ ଚିତ୍ର କରିଅଛନ୍ତି । କବିଙ୍କ ସୌନ୍ଦର୍ଯ୍ୟଜ୍ଞାନର ପୂର୍ଣ୍ଣ ଅବବୋଧ ନିମିତ୍ତ ସମସ୍ତ ଗ୍ରନ୍ଥଟି ଅଧ୍ୟୟନ କରିବା ପାଇଁ ପାଠକମାନଙ୍କୁ ଅନୁରୋଧ କରି ଆମ୍ଭେ ତହିଁରୁ ଗୋଟିଏ ମାତ୍ର ପଦ ଉଦ୍ଧୃତ କରୁଅଛୁଁ ।

(ସଖି ଗୋ)

କେହୁ ବୃକ୍ଷେ ଉଠି କୁସୁମେ ତୋଳନ୍ତେ
ମୃଗ ପଦ୍ମ ଗନ୍ଧ ପାଇ
ପୁଷ୍ପ ଭେକ ଭୃଙ୍ଗ ବଦନ ଚୁମ୍ବନ୍ତେ
ବୃକ୍ଷରୁ ପଡ଼ିଲ ଡେଇଁ ଗୋ ।
ପଳାନ୍ତେ ଗୋଡ଼ାନ୍ତି ଚୁମ୍ବନ୍ତେ ଘୁଡ଼ାନ୍ତି
ଛଡ଼ାନ୍ତେ ପଣନ୍ତି ବାସେ
କେଶ ବସନ ତୁଟେ ଫେଡ଼ି ଝାଡ଼ନ୍ତେ
ଦୂରେ ସଖୀଜନ ହସେ ଗୋ ।୭।

ଯେଉଁ କବିତା ପାଠକଲେ ଦେଶବିଶେଷର ଓ କାଳବିଶେଷର ଲୋକେ ପ୍ରୀତିଲାଭ କରନ୍ତି ତାହା ପ୍ରାଦେଶିକ

**ପ୍ରାଦେଶିକ, ଖଣ୍ଡଭାବ ଓ ମହାଭାବର କବିତା ।** ଭାବର କବିତା । ଏ କବିତାର ସୌନ୍ଦର୍ଯ୍ୟାନୁବୋଧରେ ଦେଶକାଳର ଐକାନ୍ତିକ ସାହଚର୍ଯ୍ୟରେ ବ୍ୟତିକ୍ରମର ପରିଦୃଷ୍ଟ ହୋଇଥାଏ ।

ଯେଉଁ କବିତା ସର୍ବକାଳରେ ସର୍ବଦେଶରେ ଜନସାଧାରଣଙ୍କ ହୃଦୟରେ ଚମତ୍କାରିଭାବ ଉତ୍ପାଦନ କରେ ତାହା ବିଶ୍ବଭାବାତ୍ମକ କବିତା । ପୁଣି ଯେଉଁ କବିତା ସର୍ବଦେଶ ଓ ସର୍ବକାଳର ଚିନ୍ତାଶୀଳ ଲୋକଙ୍କର ହୃଦୟ ଓ ମସ୍ତିଷ୍କର ବୃତ୍ତିରେ ଅପୂର୍ବ ଆନନ୍ଦ ପ୍ରଦାନ କରେ ତାହା ମହାଭାବର କବିତା । ଶେଷୋକ୍ତ ଶ୍ରେଣୀସ୍ଥ କବିତା ଧର୍ମବିଷୟକ; ସବୁ ଧର୍ମର କାବ୍ୟମାନ ଏହି ଶ୍ରେଣୀର ଅନ୍ତର୍ଭୁକ୍ତ । ଏହାକୁ କେତେକ ସମାଲୋଚକ ପ୍ରାଦେଶିକ ବା ଏକଦେଶୀ ସାହିତ୍ୟ ଆଖ୍ୟା

ପ୍ରଦାନ କରନ୍ତି । ଆଭ୍ୟନ୍ତରଗତ ବୈଶିଷ୍ଟ୍ୟହିଁ ଏହି ବିଭଜନର କାରଣ । ଧର୍ମବ୍ୟତୀତ ଅନ୍ୟାନ୍ୟ ବିଷୟର କବିତାରେ ମଧ୍ୟ ପ୍ରାଦେଶିକତ୍ୱ ଦୋଷ ଉତ୍ଥାପିତ ହୋଇପାରେ । କାରଣ ସମାଜର ରୀତି ନୀତି ଆଚାର ବ୍ୟବହାରର ବିଶିଷ୍ଟତା ହେତୁ ତାହାର ଏପରି ନାମକରଣ ହୋଇଅଛି । କବିତାର ଏହି ତିନି ବିଭାଗ ପାଶ୍ଚାତ୍ୟ ସମାଲୋଚକଙ୍କର ସୌନ୍ଦର୍ଯ୍ୟାନୁଭବ ଓ ଆନନ୍ଦୋପଲବ୍ଧି କବିତାର ଚରମ ଉଦ୍ଦେଶ୍ୟ । ତଦ୍ଦୃଷ୍ଟିରେ ଭାରତର ପ୍ରାଚୀନ ଆଲଂକାରିକମାନେ କବିତାର ପାଶ୍ଚାତ୍ୟ ବିଭାଗ ରୂପ ବିଭାଗ କରି ନାହାନ୍ତି । ସେମାନଙ୍କର ବିଭାଗକରଣ ଅନ୍ୟଥା । ସେମାନଙ୍କ ମତରେ କାବ୍ୟ ତ୍ରିବିଧ: ଉତ୍ତମ, ମଧ୍ୟମ ଓ ଚିତ୍ର । ଗୂଢ଼ୀଭୂତ ବ୍ୟଙ୍ଗ ବା ଧ୍ୱନ୍ୟାତ୍ମକ କାବ୍ୟ ପ୍ରଥମ ଶ୍ରେଣୀସ୍ଥ । ମଧ୍ୟମ ଶ୍ରେଣୀର କବିତାରେ ଗୁଣୀଭୂତ ବ୍ୟଙ୍ଗ୍ୟ ବା ଧ୍ୱନି ଗୌଣଭାବରେ ନିହିତ । ତୃତୀୟ-ଚିତ୍ର ବା ଅଧମ କାବ୍ୟ ଶବ୍ଦାର୍ଥାଲଙ୍କାରବହୁଳ । ପାଶ୍ଚାତ୍ୟ ସାହିତ୍ୟିକମାନଙ୍କ ପ୍ରୋକ୍ତ ବିଭାଗ ତ୍ରିତୟର ଉପାଦେୟତ୍ୱ ଆଦୌ ଅସ୍ୱୀକାର୍ଯ୍ୟ ନ ହେଲେହେଁ ଚିନ୍ତାଶୀଳ ସାହିତ୍ୟପ୍ରାଣର ଦୃଷ୍ଟିରେ ସେ ବିଭାଗକରଣ ଅର୍ଥବିହୀନରୂପେ ପ୍ରତୀୟମାନ ହୁଏନାହିଁ । ପୃଥିବୀରେ କୌଣସି ମହାକାବ୍ୟ ପୂର୍ଣ୍ଣ ବିଶ୍ୱଭାବାତ୍ମକ ହୋଇ ନ ପାରେ; ହେଲେ ତହିଁରୁ କେବଳ କେତେକ ପଦ୍ୟ ତାହା ହୋଇପାରେ । କେତେକ ସମାଲୋଚକ ଦାର୍ଶନିକ ଓ ଧର୍ମନୀତି ସମ୍ବନ୍ଧୀୟ କବିତାକୁ ବିଶ୍ୱଭାବ କବିତାଖ୍ୟା ପ୍ରଦାନ କରନ୍ତି । କିନ୍ତୁ ତାହା ମଧ୍ୟ କୌଣସି ଦେଶ ବା ଜାତିବିଶେଷର ଧର୍ମ ଓ ଦର୍ଶନର ଅଙ୍ଗବିଶେଷ । ତେଣୁ ଏହି ସବୁ ଦୃଷ୍ଟିରେ ବୋଧହୁଏ ଭାରତର ପ୍ରାଚୀନ ଆଲଙ୍କାରିକମାନେ ଏ ବିଭାଗକରଣର ପକ୍ଷପାତୀ ନ ଥିଲେ । ସେ ଯାହାହେଉ ପାଶ୍ଚାତ୍ୟ ଓ ଭାରତୀୟ ଉଭୟବିଧ ବିଭାଗକରଣ ସ୍ୱୀକାର କଲେ—ଦେଶ କାଳ ପାତ୍ର ବିଚାରରେ ନ କଲେ ନ ଚଳେ—ଆମ୍ଭମାନଙ୍କ କବିଙ୍କ ଗ୍ରନ୍ଥର ଉପଯୋଗିତା ଅଛି । ନିମ୍ନରେ ଅମ୍ଭେ କେବଳ କେତେକ ବିଶ୍ୱଭାବାତ୍ମକ କବିତାର ପଂକ୍ତି ଗ୍ରନ୍ଥରୁ ଉଦ୍ଧୃତ କରି ଦେଉଅଛୁଁ ।

ଯାହାର ମନ ଯହିଁ ରମିଥାଇ । ତହୁଁ ସମ୍ପତ୍ତି ତାର ବଳନାହିଁ ॥
ଧନ ଜନ ପଣ ସବୁ ବିରଙ୍ଗ । ନିତୋହେଁ ଲୋଡ଼ଇ ତାହାର ସଙ୍ଗ ॥

*

ସେ ପ୍ରାଣରୁ ପର
ବ୍ୟର୍ଥ ଜୀବନ ତା ବିନୁ ତାର ।
(୩୬ଶ ଛାନ୍ଦ ୪ପଦ)

ଏଥୁ ମରଣ ମଣି ଭଲ
କ୍ଷଣକର ସୁଖ ସ୍ୱପନ ସମ୍ପତ୍ତି
ପୁଣିହିଁ ସେହି କଲବଲ ।
(୧୬ ଛାନ୍ଦ ୧୪ ପଦ)

ପୁଣ୍ୟରେ ମିଶଇ ପୁଣ୍ୟ ପାପେ ନ ମିଶଇ ହେ
ପାପ ଲଗି ପୁଣ୍ୟ ହୋଏ କ୍ଷୀଣ

× × × ×

ସହଜେ ସାନଲୋକଙ୍କୁ ବଡ଼ପଣ ଦେଲେ ହେ
ନ ରଖଇ ପ୍ରଭୁଙ୍କ ବେଭାର ।
୨୧ଶ ଛାନ୍ଦ ୪୬ ପଦ ।

ଗ୍ରନ୍ଥର ଅନ୍ୟାନ୍ୟାଂଶରେ ପ୍ରାଦେଶିକତା ଦ୍ରଷ୍ଟବ୍ୟ ।

ଦେଖାଙ୍କର ବରପୁତ୍ର ଅଲୌକିକ ପ୍ରତିଭାଶାଳୀ କବିସମ୍ରାଟ ଭଞ୍ଜ "ଲାବଣ୍ୟବତୀ"ର ୧ମ ଛାନ୍ଦରେ କହିଅଛନ୍ତି—

"ପଦ ସରଳ ଧ୍ୱନିରେ ମାନସ ମୋହିବ ।"

ଏହି ଉକ୍ତି ଦେବଦୁର୍ଲଭଙ୍କ ରହସ୍ୟମଞ୍ଜରୀରେ ଚରିତାର୍ଥ ହୋଇଅଛି । ଏ କାବ୍ୟର କାନ୍ତ ପଦାବଳୀ ସରଳ, ସହଜ, ସରସ, କୋମଳ ତଥା ଚମତ୍କାର ଭାବପ୍ରତିପାଦକ ।

ଧ୍ୱନି:—ଉଦାହରଣ

ଉତ୍ତରୁ ଆଇଲା ଶୀତ ବିକାନ୍ତ କୁମାରୀ
କାନ୍ତ ଥିଲା କାମିନୀଙ୍କ ଦୂରୁଁ ଅପସରି ।
ଇତ୍ୟାଦି ଇତ୍ୟାଦି ।

ଶବ୍ଦ ଓ ଅର୍ଥର ଶୋଭନସଙ୍ଗତିରେ, ପ୍ରାସାଦ, ମାଧୁର୍ଯ୍ୟ, ସୁକୁମାରତା ଓ ସମତାଦି ଗୁଣସାହଚର୍ଯ୍ୟରେ, ସ୍ୱଭାବୋକ୍ତି, ଉପମା, ରୂପକ, ଉତ୍ପ୍ରେକ୍ଷା,

ଅତିଶୟୋକ୍ତି ପ୍ରଭୃତି ଅଲଙ୍କାର ବିନ୍ୟାସରେ କରୁଣ ଶୃଙ୍ଗାରାଦି ରସର ସଂଶ୍ଳିଷ୍ଟିରେ ଏ କାବ୍ୟ ଉତ୍କଳ କାବ୍ୟ-ମଣ୍ଡଳରେ ଅତି ଉଚ୍ଚସ୍ଥାନ ଅଧିକାର କରିବ । ମଥୁରାମଙ୍ଗଳ ଓ ରସକଲ୍ଲୋଳ ତୁଳନାରେ ମଧ୍ୟ ରହସ୍ୟମଞ୍ଜରୀ ଉତ୍କୃଷ୍ଟତର । ଉତ୍କଳ କାବ୍ୟରାଜ୍ୟରେ ରହସ୍ୟମଞ୍ଜରୀର ୧୦ମ ଓ ୧୯ଶ ଛାନ୍ଦ ସଙ୍ଗୀତସମ୍ବନ୍ଧ ହେତୁ ଅପୂର୍ବ ଓ ଅଭିନବ । କବି ୧୬ଶ ଛାନ୍ଦରେ ଷଡ଼୍‌ଋତୁ ବର୍ଣ୍ଣନା କରିଅଛନ୍ତି । ଏପରି ସରସ ଅଥଚ ଅର୍ଥବତ୍ ଋତୁବର୍ଣ୍ଣନା ଉତ୍କଳର କୌଣସି କବି କରି ନାହାନ୍ତି କହିଲେ ଅତ୍ୟୁକ୍ତି ହେବନାହିଁ । ଚଣ୍ଡୀଦାସାଦିଙ୍କଠାରେ ଆଧୁନିକ ମତାନୁଯାୟୀ ଯେଉଁ ଅଶ୍ଳୀଳତା ପରିଲକ୍ଷିତ ହୁଏ, ତାହା ଏହାଙ୍କଠାରେ ନାହିଁ । ସଙ୍ଗୀତସମ୍ବନ୍ଧରେ ଦେବଦୁର୍ଲ୍ଲଭ, ଜୟଦେବ ଓ ବିଦ୍ୟାପତିଙ୍କର ସମକକ୍ଷ, ତାଙ୍କୁ ଉତ୍କଳର ବିଦ୍ୟାପତି ଆଖ୍ୟା ସ୍ୱଚ୍ଛନ୍ଦରେ ପ୍ରଦାନ କରାଯାଇପାରେ ।

**କବିଙ୍କ ସ୍ଥାନ ନିରୂପଣ ।**

ଦୀନକୃଷ୍ଣ, ଉପେନ୍ଦ୍ର, ଅଭିମନ୍ୟୁ, ଯଦୁମଣି, ଲୋକନାଥ ପ୍ରଭୃତିଙ୍କର କାବ୍ୟମାନଙ୍କରେ ଆଦରସର ଅନୁଚିତ ବିଶ୍ଳେଷଣ ଓ ବର୍ଣ୍ଣନ ସେମାନଙ୍କ କବିତାର ଉପାଦେୟତାକୁ ମ୍ଳାନ କରି ଦେଇଅଛି । ଯମକ, ଅନୁପ୍ରାସ, ଗୋମୂତ୍ରାଦି ଛନ୍ଦର, ପୃଥକ ଓ ସଂଶ୍ଳିଷ୍ଟରୂପେ ନାନାବିଧ ଅଲଙ୍କାରର, ସ୍ଥାନ ବିଶେଷରେ ଦ୍ୱିଅର୍ଥ ତ୍ରିଅର୍ଥ, ଚତୁରର୍ଥ ପ୍ରକାଶକ ବାକ୍ୟର ଯୋଜନା ଓ କ୍ଳିଷ୍ଟତ୍ୱାଦି ଦୋଷ ଉପରୋକ୍ତ କବିମାନଙ୍କର କାବ୍ୟମାନଙ୍କରେ ଅଲ୍ପାଧିକ ପରିମାଣରେ ପରିଦୃଷ୍ଟ ହୁଏ । ସେହି କବି ବିଧାତାମାନେ ଗୋଟିଏ ଗୋଟିଏ କାବ୍ୟଜଗତ୍ ସୃଷ୍ଟି କରିଥିଲେ । ଯେପରି ବ୍ରହ୍ମା ଜଗତକୁ ସର୍ବବିଧ ବିଷୟରେ ପୂର୍ଣ୍ଣକରି ନିର୍ମାଣ କରନ୍ତି, କାବ୍ୟସ୍ରଷ୍ଟା ସେହିପରି କାବ୍ୟରେ ସର୍ବବିଧ ବିଷୟମାନଙ୍କୁ ସ୍ଥାନଦେଇ ପାଠକ ଓ ଶ୍ରାବକମାନଙ୍କୁ ସର୍ବଦେଶଦର୍ଶୀ କରିବାରେ ବ୍ରତୀ ହୁଅନ୍ତି । କିନ୍ତୁ କୌଣସି କୌଣସି ବିଷୟର ଅତିବ୍ୟବହାରରେ ତାହା ଲୋକଶ୍ଳାଘ୍ୟ ହୋଇପାରେ ନାହିଁ । ବିଷୟବିଶେଷର ଅତିମାତ୍ର ବ୍ୟବହାରରେ ଦୋଷ ସମ୍ଭବେ । ସେହି ଦୋଷ ଅଲ୍ପାଧିକ ପରିମାଣରେ ଉପେନ୍ଦ୍ର, ଦୀନକୃଷ୍ଣ ଓ ଅଭିମନ୍ୟୁଙ୍କଠାରେ ପ୍ରଯୁଜ୍ୟ । କିନ୍ତୁ ଏ ସକଳ ଦୋଷମାନଙ୍କରୁ ଆମ୍ଭମାନଙ୍କର ରହସ୍ୟମଞ୍ଜରୀର କବି ସମ୍ପୂର୍ଣ୍ଣ ଭାବରେ ମୁକ୍ତ । ସେହି କାରଣରୁ ଆମ୍ଭ ମତରେ ଦେବଦୁର୍ଲ୍ଲଭଙ୍କ ସ୍ଥାନ ସେମାନଙ୍କଠାରୁ ସ୍ୱତନ୍ତ୍ର

ଓ ଉଚ୍ଚ କଣ୍ଠରେ ଯେ ସତ୍ୟର ଅପଲାପ ହେଲା, ଏପରି କିଛି ନୁହେ । ଏପରି ସର୍ବାଙ୍ଗସୁନ୍ଦର କାବ୍ୟ ଏପର୍ଯ୍ୟନ୍ତ ଅପ୍ରକାଶିତ ଭାବରେ ଥିବା ଆଶ୍ଚର୍ଯ୍ୟର ବିଷୟ । ମୁଁ ଆଶାକରେ, ଏ ଗ୍ରନ୍ଥ ପ୍ରକାଶ ଓ ପ୍ରଚାରରେ ଉତ୍କଳ ନିଜକୁ ଗୌରବାନ୍ୱିତ ମନେ କରିବ ଏବଂ କହିବ ଯେ ଓଡ଼ିଆ ସାହିତ୍ୟ ସାଧକର ସାହିତ୍ୟ, ପ୍ରାଣବନ୍ତର ସାହିତ୍ୟ ଓ ରସିକର ସାହିତ୍ୟ । ଏପରି ସାହିତ୍ୟରତ୍ନ ଅନ୍ୟ ଦେଶର ପ୍ରାକୃତ ସାହିତ୍ୟରେ ବିରଳ । ଦେବଦୁର୍ଲ୍ଲଭ ! ତୁମ୍ଭେ ଜଣେ ସାଧକ ଥିଲ, ତୁମ୍ଭର ସାଧନାରେ ତୁମ୍ଭେ ଉତ୍କଳର ମୁଖକୁ ଗୌରବାନ୍ୱିତ କରିଥିଲ ଓ କରୁଅଛ । ଆଜି ତୁମ୍ଭର ତ୍ରିଦିବଗତ ଆତ୍ମା ନିସର୍ଗ ବିଳାସମଣ୍ଡଳ ଉପରୁ ଆଧୁନିକ ଉତ୍କଳୀୟଙ୍କ ଉପରେ କଲ୍ୟାଣପୁଷ୍ପ ବର୍ଷଣ କରୁ ଓ ସେମାନଙ୍କ ହୀନପ୍ରାଣତା, ଶ୍ରମକାତରତା, ପଣ୍ଡିତମ୍ମନ୍ୟତା, ବୃଥାଭିମାନିତ୍ୱ, ଶିକ୍ଷାଗ୍ରହ-ବିମୁଖତା ତଥା ଧର୍ମଶୂନ୍ୟତା ଦୂର କରି ସେମାନଙ୍କୁ ସିଦ୍ଧିର ସୋପାନରେ ଚାଳିତ କରୁ, ଏହାହିଁ ଅନୁଗତର ନିବେଦନ ।

ଏହି ଗ୍ରନ୍ଥର ତତ୍ତ୍ୱାଦି ବିଷୟରେ କିଞ୍ଚିତ ଆଭାସ ପ୍ରଦାନ କଲି । ଏହା ଯେ ପ୍ରମାଦଶୂନ୍ୟ ତାହା ବୋଲିଯାଇ ନ ପାରେ । ପ୍ରମାଦ ପ୍ରଦର୍ଶିତ ହେଲେ ତାହାର ପରିହାର ପର ସଂସ୍କରଣରେ କରାଯିବ । ଏହି ଗ୍ରନ୍ଥର ସଂକଳନରେ ମୋର ପ୍ରିୟ ଭ୍ରାତୃଦ୍ୱୟ ଶ୍ରୀମାନ ଜଗଦାନନ୍ଦ ଓ ଶ୍ରୀମାନ ବଛୁନନ୍ଦଚରଣ ମୋତେ ବିଶେଷ ସାହାଯ୍ୟ ପ୍ରଦାନ କରିଅଛନ୍ତି । ସେମାନଙ୍କର ଦୃଷ୍ଟି ଉତ୍କଳସାହିତ୍ୟ ପ୍ରତି ସଦା ଆକୃଷ୍ଟ ଥାଉ, ଏହାହିଁ ପ୍ରଭୁଙ୍କଠାରେ ପ୍ରାର୍ଥନା ।

ଏହି ଦ୍ୱିତୀୟ ମୁଦ୍ରଣରେ ଆମ୍ଭେ ଆଉ ଖଣ୍ଡିଏ ପୋଥିର ସାହାଯ୍ୟ ନେଇ ସ୍ଥାନେ ସ୍ଥାନେ ସାମାନ୍ୟ ପରିବର୍ତ୍ତନ କରିଅଛୁ । ଖଲ୍ଲିକୋଟନିବାସୀ ମୋର ପ୍ରିୟ ଭ୍ରାତ୍ର ଗିରିଶଚନ୍ଦ୍ରଙ୍କ ସ୍ୱୟ ଏହି ପୋଥି ଖଣ୍ଡିକ ଦେଇ ଧନ୍ୟବାଦର ପାତ୍ର ହୋଇଅଛନ୍ତି । ଟୀକା ମଧ୍ୟ ବର୍ଦ୍ଧିତ ହୋଇଅଛି ।

---

# ରହସ୍ୟ-ମଞ୍ଜରୀ

—※—

## ପ୍ରଥମ ଛାନ୍ଦ

ଗାଦ୍ଧା

ନନ୍ଦନନ୍ଦନ ଶ୍ରୀମଧୁସୂଦନ ମନ ମୋର କଲେ ଉଲ୍ଲାସ ।
ଅତି ରହସ୍ୟରେ ରହସ୍ୟ-ମଞ୍ଜରୀ ନାମରେ ଗୀତ ପ୍ରକାଶ । ଘୋଷା ।

( ମଙ୍ଗଳ-ଗୁଜରୀ-ଗୀଯ୍ୟତେ )

ଶ୍ରୀ ଜୟ ଜଗନ୍ନାଥ ।

ନୀର କ୍ଷୀର ଦଧି ଘୃତ ସୁରା,
ଇକ୍ଷୁ ଲବଣାଦି ସପତସାଗରା । । ଜୟ ଜଗନ୍ନାଥ । ୧ ।

କ୍ରୌଞ୍ଚ ଶାକ ଶାଲ୍ମଳୀ ପୁଷ୍କର,
ପ୍ଲକ୍ଷ କୁଶ ଜମ୍ବୁଦ୍ୱୀପ ଶ୍ରେଷ୍ଠସାର । ଶ୍ରୀ ଜଗନ୍ନାଥ । ୨ ।

ଯମନୀକ ନାମେ ତୀର୍ଥ ଆଦ୍ୟ,
ତହିଁ ଯମେଶ୍ୱର ଦେବତା ପ୍ରସିଦ୍ଧ । ଶ୍ରୀ ଜଗନ୍ନାଥ । ୩ ।

ତହିଁ ଯମ ସମକ୍ଷରେ ଆସି,
ମନ୍ତ୍ର ଫନ୍ଦମଣେ ଯାଇ ପାପ ନାଶି । ଶ୍ରୀ ଜଗନ୍ନାଥ । ୪ ।

ତେତନ୍ତେ କ୍ଷେତ୍ର ନୀଳ ମହାଗିରି,
ଲକ୍ଷେ ଯୋଜନ ଉତ୍ସର୍ଗ କାୟା କରି । ଶ୍ରୀ ଜଗନ୍ନାଥ । ୫ ।

ଶଙ୍କର ଦେବତା ପଞ୍ଚ ଘର,
ପଞ୍ଚ ମାଗନ୍ତେ ବରନ୍ତି ଗୋପ୍ୟଗିରି । ଶ୍ରୀ ଜଗନ୍ନାଥ । ୬ ।

ନୀଳ ମନ୍ଦାଧର ତା ମୁକୁଟେ,
ନାମ ଶ୍ରୀପୁରୁଷୋତ୍ତମ ଓଡ଼୍ରରାଷ୍ଟ୍ରେ ।ଶ୍ରୀ ଜଗନ୍ନାଥ ।୭।
କଳପମହୀରୁହ ନିକଟେ,
ମୁକ୍ତି ମଣ୍ଡପବଟଚତ୍ର ଥାନ ଘଟେ ।ଶ୍ରୀ ଜଗନ୍ନାଥ ।୮।
ସିଦ୍ଧ ଗଣପତି ବଟମୂଳେ,
ସିଦ୍ଧ ପ୍ରଚଣ୍ଡନନ୍ଦନ ବସେ ଡାଳେ ।ଶ୍ରୀ ଜଗନ୍ନାଥ ।୯।
ବଟ ରୋହିଣୀକୁଣ୍ଡ ଉତ୍ତରେ,
ପ୍ରଭୁ ବିଜେ ବଡ଼ଦେଉଳ ଭିତରେ ।ଶ୍ରୀ ଜଗନ୍ନାଥ ।୧୦।
ଅଷ୍ଟଦଳ କମଳ କେଶରେ,
ତହିଁ ମହାଯୋଗପୀଠର ଶିଖରେ ।ଶ୍ରୀ ଜଗନ୍ନାଥ ।୧୧।
ଖୀନକଟି ନେତର କାଛେଣୀ,
ଟକା ଚରଣ ବଇଠି ତଟ ଜିଣି ।ଶ୍ରୀ ଜଗନ୍ନାଥ ।୧୨।
ହୃଦସ୍ଥଳାଙ୍କିନ ଶ୍ରୀବତ୍ସଙ୍କ,
ଗନ୍ଧ ଚନ୍ଦନ ଚର୍ଚ୍ଚିତ ଗୁରୁଅଙ୍ଗ ।ଶ୍ରୀ ଜଗନ୍ନାଥ ।୧୩।
କଉସ୍ତୁଭମଣି କଣ୍ଠତଟ,
ହେମ ମଣି ରତ୍ନ ହୃଦେ ଝଟ ଝଟ ।ଶ୍ରୀ ଜଗନ୍ନାଥ ।୧୪।
ଦଇତଦଳନ ଭୁଜଦଣ୍ଡ,
ଶଙ୍ଖ ଚକ୍ର ଜ୍ୟୋତି ବଧୂ ମାରତଣ୍ଡ ।ଶ୍ରୀ ଜଗନ୍ନାଥ ।୧୫।
ଅଧର ପ୍ରବାଳ ଜବାରୁଣ,
ଚଣ୍ଡକର ଜିଣି କୁଣ୍ଡଳକରଣ ।ଶ୍ରୀ ଜଗନ୍ନାଥ ।୧୬।
ଶ୍ୱେତପଦ୍ମ ଲୋଚନ ବିଶାଳ,
ଲୁବ୍ଧ ମଧୁପାନେ ମଧୁପ ନିଚଳ ।ଶ୍ରୀ ଜଗନ୍ନାଥ ।୧୭।
ନବଘନ ଜଳଦ ଝଳ ଝଳ,
ମୁଖକମଳ ବନ୍ଦୁ ଇନ୍ଦୁ ଝଳମଳ ।ଶ୍ରୀ ଜଗନ୍ନାଥ ।୧୮।

କଣ୍ଠ ମୁକୁଟ ଅବତଂସ,
ଭକ୍ତଜନ ଅଘତମିର ବିନାଶ । ଶ୍ରୀ ଜଗନ୍ନାଥ । ୧୯ ।

ଶିରେ ଶୋଭେ ଦମ୍ପେଣାର ଚୂଳ,
ନାନା କୁସୁମେ ତୁଳସୀ ଧଣ୍ଡାମାଳ । ଶ୍ରୀ ଜଗନ୍ନାଥ । ୨୦ ।

ସମ୍ମୁଖରେ ଗରୁଡ଼ ଯୋଡ଼ି କର,
କଲା ଶ୍ରୀମୁଖଙ୍କୁ ସ୍ତୁତି ଉକ୍ତର । ଶ୍ରୀ ଜଗନ୍ନାଥ । ୨୧ ।

ସିଦ୍ଧ ରୁଦ୍ରଗଣ ବିଦ୍ୟାଧର,
ସେବା ଖଟୁଛନ୍ତି ଯୋଗେ ଯେ ଯାହାର । ଶ୍ରୀ ଜଗନ୍ନାଥ । ୨୨ ।

ଛତ୍ରାଲମ୍ବ ଜଳଦ ଡାମ୍ବର,
କୋଟି କୋଟି ସିନ୍ଧୁ-ଲହରୀ ଚାମର । ଶ୍ରୀ ଜଗନ୍ନାଥ । ୨୩ ।

ଭେରୀ ଶଙ୍ଖ ଉପାଙ୍ଗ କାହାଳ,
ବେଣୁ ବୀଣା ତାଳ ମୃଦଙ୍ଗ ଚହଲ । ଶ୍ରୀ ଜଗନ୍ନାଥ । ୨୪ ।

ଗାବନ୍ତି ଗନ୍ଧର୍ବେ ମିଳି ସଙ୍ଗେ,
ମଧ୍ୟେ ନାଚନ୍ତି କନ୍ନରୀ ନାନାରଙ୍ଗେ । ଶ୍ରୀ ଜଗନ୍ନାଥ । ୨୫ ।

ନୃତ୍ୟ ଗୀତ ବାଦ୍ୟ ରସ ରଙ୍ଗ,
ନାନା ଗତି ଭ୍ରାନ୍ତି ସ୍ତୁତିରୀ ତରଙ୍ଗ । ଶ୍ରୀ ଜଗନ୍ନାଥ । ୨୬ ।

ସୁଭଦ୍ରା ସୁଦର୍ଶନ ଶ୍ରୀପତି,
ବଳଦେବ ଆଦି ଚତୁର୍ଦ୍ଧା ମୂରତି । ଶ୍ରୀ ଜଗନ୍ନାଥ । ୨୭ ।

ଶ୍ୱେତ ପୀତ ରକ୍ତ ନୀଳ ଚାରି,
ଚାରିବର୍ଣ୍ଣେ ଏକ କଳେବରଧାରୀ । ଶ୍ରୀ ଜଗନ୍ନାଥ । ୨୮ ।

ସହସ୍ର ବଦନେ ବେଦଧାରୀ,
କୋଟି କୋଟି କଳ୍ପେ କହି ତ ନପାରି । ଶ୍ରୀ ଜଗନ୍ନାଥ । ୨୯ ।

ମୋ ଛାର ପାମର ମୂଢ଼ମତି,
ତାହା କହିବାକୁ କିସ ମୋ ଶକତି । ଶ୍ରୀ ଜଗନ୍ନାଥ । ୩୦ ।

କେବଳ ଭରସା ମୋର ଏହି,
ଦୀନବନ୍ଧୁ ବୋଲି ନାମ ଅଛି ବହି । ଶ୍ରୀ ଜଗନ୍ନାଥ । ୩୧ ।
ଆରତଭଞ୍ଜନ ବଳଦେଭ୍ରା,
କୋଟି ବ୍ରହ୍ମାଣ୍ଡେ ଉଡ଼ୁଛି ଯାର ବାନା । ଶ୍ରୀ ଜଗନ୍ନାଥ । ୩୨ ।
ଏବେ ଯା ସ୍ପୃହୁଛି ମୋର ମନ,
ତାହା କହିବାକୁ ହୁଅ ପରସନ୍ନ । ଶ୍ରୀ ଜଗନ୍ନାଥ । ୩୩ ।
ଆନ ମୁଁ ଯେ କିଛି ମାଗୁନାହିଁ,
ତୁମ୍ଭ ଚରଣେ ଶରଣ ଲୋଡ଼ୁଅଛି । ଶ୍ରୀ ଜଗନ୍ନାଥ । ୩୪ ।
ରହସ୍ୟ-ମଞ୍ଜରୀ ନାମେ ଗୀତ,
ଆଜ୍ଞା ହୋଇଲେ ମୁଁ କରିବି ଉକତ । ଶ୍ରୀ ଜଗନ୍ନାଥ । ୩୫ ।
ଛନ୍ଦିବି ବିବିଧ ରସେ ଛନ୍ଦ,
ମୋର ହୃଦେ ବିଜେ କରିବା ଗୋବିନ୍ଦ । ଶ୍ରୀ ଜଗନ୍ନାଥ । ୩୬ ।
ସରସ୍ୱତୀରୂପେ ବାକ୍ୟଦେବୀ,
କଣ୍ଠେ ଚୁଲନ୍ତୁ ଅଛରୁ ବାକ୍ୟ ସ୍ରବି । ଶ୍ରୀ ଜଗନ୍ନାଥ । ୩୭ ।
ସର୍ବସୁଖଦାୟିନୀ ଚରଣେ,
ଦେବ ନିରନ୍ତରେ ପଶିଲି ଶରଣେ । ଶ୍ରୀ ଜଗନ୍ନାଥ । ୩୮ ।
ଇତି ଶ୍ରୀ ରହସ୍ୟମଞ୍ଜରୀ ଛନ୍ଦେ,
ନୀଳାଦ୍ରିଚନ୍ଦ୍ରମା ଚରଣାରବିନ୍ଦେ,
ଦ୍ୱିଜସ୍ୱଚ୍ଛନ୍ଦ ବର୍ଣ୍ଣିଲେ କେବଣ ବୃତ୍ତାନ୍ତ,
କହିବାକୁ ଆଜ୍ଞା ହେଉ ଶ୍ରୀ ଜଗନ୍ନାଥ । ୧ ।

---

୩୫—କ, ଖ, ଓ ଘ ମୁଁ ଉଠାଇ ଦେଇ ୨ୟ ପଦକୁ ୧୧ ଅକ୍ଷରରେ ପଢ଼ନ୍ତି ।

୩୭—୨:—ପ୍ରଣତ (ଗଘ, ଚ) ଅକ୍ଷରୁ (ଖ, ଗ, ଚ,) କାବ୍ୟସବ (ଘ) ।

# ଦ୍ୱିତୀୟ ଛାନ୍ଦ ।

( ବସନ୍ତ ବରେଣ ଗୀୟତେ । କଳଶା ବାଣୀ । )

ଏକଦନେ ଏକାନ୍ତ ମନ୍ଦରେ ଜଗନ୍ନାଥ ।
ମଣିମୟ ପଲଙ୍କ ଉପରେ ବସିଜାତ ।
ବେଳ ଜାଣି ରୁକ୍ମିଣୀ ରମଣୀ-ଶିରୋମଣି ।
ପଦ ପାଶେ ଏକେଲ ପ୍ରବେଶ ଠାକୁରାଣୀ ।୧।

ଶିରେ ଶ୍ରୀଚରଣ ଲଗାଇ ଶୁଭ୍ରକେଶୀ ।
କ୍ରୋଧେ ଗଦଗଦ ବାମା ବଚନ ପ୍ରକାଶି ।
ଶୁଣ ପ୍ରାଣେଶ୍ୱର ଏକ ବଚନ ମୋହୋର ।
କହିବାକୁ ଭୟେ ମନେ ବହୁତ ବରଷର ।୨।

ବରଷୁଁ ବରଷୁଁ ତ ବହୁତ ଦନ ଗଲା ।
କହିବାକୁ ଶକ୍ୟ ଏଥି କାହାର ନୋହିଲା ।
ମାତା ପିତା ଉଗ୍ରସେନ ଉଦ୍ଧବାଦି ଯେତେ ।
ସବୁରଙ୍କ ହୃଦେ ପ୍ରଭୁ ଚନ୍ତା ଅପ୍ରମିତେ ।୩।

ଷୋଳ ସହସ୍ର ଅଷ୍ଟ ନାୟିକା ଯୁବତୀ ।
ଅଛନ୍ତି ଅନେକ ବାମା ସୁଜାଣ ସୁମତି ।
ସକଳ କାମିନୀଙ୍କ ବିକଳଭାବ ଦେଖି ।
ଆଇଲି ଶ୍ରୀମୁଖକୁ ଭୟେ ସଙ୍କୋଚ ଉପେକ୍ଷି ।୪।

କସ ଅର୍ଥେ ପ୍ରଭୁ ହେ ବିରସ ତୁମ୍ଭ ମନ ।
କେହୁଣସି ସୁଖକୁ ନ କର ଅବଧାନ ।
ଦ୍ୱାରବତୀ ଭୁବନେ କେବଣ ସୁଖ ନାହିଁ ।
ସବସୁଖ ତେଜି ମନ ରମାଇଲ କାହିଁ ।୫।

---

୧—୨ :—ମଣିମୟ କଣୟ ପଲଙ୍କେ—ଜ

୨—୧ :—ରମା । (କ, ଖ, ଚ) । ୫—୨ :—କେହୁଣିହି (ଚ) ।

*

ହାତୀ ଛତୀ ପାଦାନ୍ତ ଝୁହୁତ ରଥ ରଥୀ ।
ଯାତବଂଶ ଆଦି କୁମ୍ଭ କେ କହୁ ସମ୍ପତ୍ତି ।
ଟେଙ୍ଗ ହୋଡ଼ ନଟ ଭଟ ନାନାରଙ୍ଗ କେଳି ।
ଗାବନ୍ତ ଗନ୍ଧର୍ବେ ଯେ ନାଚନ୍ତ ବିଦ୍ୟାଧରୀ ।୬।
ଖଟଣି ସେବକ ଯେତେ ଗ୍ରାମୂରେ ଅଛନ୍ତ ।
ଯେ ଯାହାର ବେଳକାଳେ ଆଜ୍ଞା ନ ଲଙ୍ଘନ୍ତ ।
ଯୂଥ ଯୂଥ ଅଭିରଙ୍ଗୀ ପ୍ରଧାନ ନାୟିକା ।
ନବୀନ ଯୌବନୀ ରସ ରହସ୍ୟେ ଅଧିକା ।୭।
ନୃତ୍ୟ ଗୀତ ବାଦ୍ୟ ରସ ରଙ୍ଗେ କୁତୂହଳୀ ।
ତ୍ରି ଜଗମୋହନୀ ଯେ ଅଛନ୍ତି ସବୁବାଳୀ ।
ମୁଖ ଟେକି ନ ଚାହିଁ ନ କହି କମ୍ପା କଥା ।
ହାସ୍ୟ ରସ ଦେଖିଲେ ତଳକୁ ପୋତ ମଥା ।୮।
ହୁଁ ହୁଁ କାର କରଣ ନିଶ୍ୱାସ ଉଠେ ଗ୍ରାଢ଼ ।
କାହାକୁ କିଛି ନ କହି କଥା କର ଗାଢ଼ ।
କାହାର ନ ଘେନ ସେବା କ୍ଷଣକେ ବିରଙ୍ଗ ।
ଶୟନ ବେସନ ସୁଖ ସବୁ ଅପ୍ରସଙ୍ଗ ।୯।
ଚନ୍ଦ୍ରନସମ ଲେପନ୍ତେ ବଦନ ମାଡ଼ି ଶୁଅ ।
ଲେଉଟାଇ ଲୋଡ଼ନ୍ତେ ମନ୍ଦିରୁ ଗରୁ ହୁଅ ।
କ୍ଷଣେ ଉଠ କ୍ଷଣେ ବସ କ୍ଷଣେ ହେଠ ମାଥ ।
କ୍ଷଣେ କ୍ଷଣେ ବସ୍ତ୍ରେ କପାଳେ ମାର ହାତ ।୧୦।
ଊର୍ଦ୍ଧ୍ୱ ମୁଖ ହୋଇଣ ନିଶ୍ୱାସ ଟେକି ଛାଡ଼ ।
କର ଶିରେ କଣ୍ଟକ୍ରି ପଲଙ୍କତଳେ ପଡ଼ ।

---

୬—୩—ଟେଟ, (ଘ) ଭଣ୍ଡ—
୭—୨—"ପ୍ରଭୃମନ ହରବାକୁ ଯୋଗତା ଅଛନ୍ତ (ଘ, ଚ, ଜ)
୭—୪—ଯୌବନୀ ରସ ରଭସେ ଚ, ଜ ।
୯—୧—ଫଫକାର--

କି ଅର୍ଥେ ଶରୀର କ୍ଷୀଣ କର ଦାମୋଦର ।
ଦଣ୍ଡମଣ୍ଡ କରି ପ୍ରଭୁ ଶ୍ରେଷ୍ଠ ପରହର ।୧୧।
ଯେବେ ନ କହିବ ପ୍ରଭୁ ଏ ସନ୍ଧ ବିସ୍ତର ।
ମରିବି ସକଳ ବାମା ସତ୍ୟ ଏ ଆମ୍ଭର ।
ରୁକ୍ମିଣୀ ବିନୟ-ବୋଧ ଶୁଣି ଜଗନ୍ନାଥ ।
ଉଠି ବସି ତୋଳି ପ୍ରଭୁ କଲେ କୋଳାଗତ ।୧୨।
ପ୍ରଭୁ ଠାକୁରାଣୀ ଏକ ଆସନେ ବିଜୟେ ।
ପ୍ରବୋଧନା ବଚନ କହନ୍ତି ଦେବରାଏ ।
ଲକ୍ଷ୍ମୀନାରାୟଣ ବେନି ଚରଣ କମଳେ ।
ସର୍ବଦା ଚୁମ୍ବଇ ଦେବ ନୟନ ଭ୍ରମରେ ।୧୩।
ଇତି ଶ୍ରୀ ରହସ୍ୟମଞ୍ଜରୀ ଦ୍ୱିତୀୟ ଛାନ୍ଦେ,
ରୁକ୍ମିଣୀ ରମଣ ଶ୍ରୀଚରଣ ବନ୍ଦେ,
ତୃତୀୟ ଛାନ୍ଦ ବର୍ଣ୍ଣନେ କେବଣ ବୃତ୍ତାନ୍ତ,
କହିବାକୁ ଆଜ୍ଞା ହେଉ ରୁକ୍ମିଣୀ ଦେବୀର କାନ୍ତ ।୨।



## ତୃତୀୟ ଛାନ୍ଦ ।

—:():—

ରାଗ—ବରାଡ଼ି । ଆଷାଢ଼ ଶୁକ୍ଳ ବାଣୀରେ ଗାଇବ ।

ବୈଦର୍ଭରାଜପ୍ରସୁତା ପୁରତ,
କହନ୍ତି ଯେ ପ୍ରଭୁ ଶ୍ରୀ ଜଗନ୍ନାଥ,
ଶୁଣ ରମଣୀ-ଶିରୋମଣୀ ପ୍ରିୟା,
ନିଗୂଢ଼ କଥା ପଚାରିଲ ଯାହା,
ସେ ଗୋପ ବାରତା,
ମନ ସେ ଜାଣଇ ହୃଦୟ ବ୍ୟଥା । ୧ ।

ପ୍ରାଣଙ୍କୁ ଅଧିକ ଅଟଇ ଯେହୁ,
ହୃଦବେଦନା ହମ୍ଭାଳଇ ସେହୁ,
ଆମ୍ଭର ଏଥି ପ୍ରାଣସଖୀ ନାହିଁ,
ତେଣୁ ନ କହୁ ହରାଉଛୁ ଦେହୀ,
ସ୍ୱେ ପ୍ରମାଦ-ବ୍ୟଥା,
ପ୍ରାଣ ମୁରୁଛୁ ନ କହୁ ସେ କଥା । ୨ ।
ଅସଙ୍ଗେ ପଡ଼ି ଯାଉଅଛୁ ମର,
ଦୁଷ୍ଟାଳେ ବଞ୍ଚୁ ଏ ଦ୍ୱାରପୁରୀ,
ଲଲାଟେ ଲେଖିଅଛୁ ଯାହା ବନ୍ଧୁ,
ଦୁଃଖକାଳେ ସୁଖ ଲୋଡ଼ ୍କ ପାଇ,
କ କହିବା ଆମ୍ଭେ,
ଶୁଣିଲେ ପରତେ ନ ଯିବ ତୁମ୍ଭେ । ୩ ।
ଯାହାର ମନ ଯହିଁ ରମି ଥାଇ,
ତହୁଁ ସମ୍ପତ୍ତି ତାର ବଡ଼ ନାହିଁ.
ଧନ ଜନ ପଣ ସବୁ ବରଙ୍ଗ,
ନତ୍ୟେହେଁ ଲୋଡ଼ଇ ତାହାର ସଙ୍ଗ,
ସେ ପ୍ରାଣରୁ ପର,
ବ୍ୟର୍ଥ ଜୀବନ ତା ବଳୁ ତାର । ୪ ।
ଦୁଇ ମନକୁ ଦୁହେଁ ଟକାଟକ,
ଭଲନ୍ତ ପ୍ରୀତ ରୁଚି ଥାଇ ନକ,
ବାଦେ ବଢ଼ାନ୍ତ ଅଖଣ୍ଡ ପୀରତ,
ପ୍ରାଣହୁଁ ଅଧିକ କର ସୁ କୃତ,
ସେ ସୁକୃତ ଜନ,
ପୀରତ ଲଗି ମୁରୁଛନ୍ତ ପ୍ରାଣ । ୫ ।
ପ୍ରଭୁ ମୁଖୁଁ ଶୁଣି ଦେବୀ ରୁକ୍ମଣୀ,
ମନର ମନେ ପୁଣ ପୁଣ ଗୁଣି,

ଏ ତ ଅଲୌକିକ ଚକିତ କଥା,
ଅଧିକେ ହୃଦକୁ ଲଗିଲା ବଥା,
ମୁଁ କିସ କରିବି,
ଏବେ ସେ ଗରଳ ଖାଇ ମରିବି । ୬ ।
ଏହାଙ୍କ ପ୍ରାଣସଙ୍ଗୀ ବଳଦେବେ,
ସଙ୍ଗେ ସଙ୍ଗେ ସେ ତ ଅଛନ୍ତି ଏବେ,
ଉଦ୍ଧବ ଅକ୍ରୂର ସାତ୍ୟକି ଘେନ,
ଯାଦବଗଣ ମଧ୍ୟେ ଏହୁ ଶ୍ୟାମୀ,
ଏମାନେହେଁ ସନ୍ଧି,
ମନ ନ ଜାଣିଲେ ପାରୁଶେ ଥାଇ । ୭ ।
ସ୍ତ୍ରୀ ମଧ୍ୟରେ ବଡ଼ପାଟ ମୁହିଁ,
ମୋହୋର ପଛେ ଆଉ ଯେ ବସାଇ,
ଏକୁ ଆରେକ ରୂପ ଗୁଣେ ସର,
ଏହାଙ୍କ ମନ ନ ପାରିଲୁ ହର,
ଧିକ ଆତ୍ମଗୁଣ,
ଜୀବନ ଯୌବନ ବୃଥା କାରଣ । ୮ ।
ସ୍ତ୍ରୀ ଯେତେକ ଛନ୍ତି ଏହୁଠାରେ,
ଜଣେହେଁ କେହୁ ନାହିଁ ବାପ ଘରେ,
ମନ ସଙ୍ଗୀ ଆଉ ମୂର୍ଚ୍ଛିଛି କାହିଁ,
ଏଡ଼େ ସପତ୍ନିରେ କନ୍ଦରେ ନାହିଁ,
କମ୍ପା ନ ଲୋଡ଼ନ୍ତି,
ପ୍ରଭୁମାନେହେଁ କାହାକୁ ଡରନ୍ତି । ୯ ।
ସେହୁ କେମନ୍ତେ ରହିଲା ମୁବୁଛି,
ଏହାଙ୍କ ବିନୁ ଦେହ ଧରିଅଛି,
ଏଡ଼େ ଲୋକକୁ କି ଦୋଷେ ଛାଡ଼ିଲେ,
ଗୁଣ ହେଜି ବୃଦ୍ଧି ଏବେ ଲୋଡ଼ିଲେ,

ଜାଣିମା କେମନ୍ତେ,
କେ ଅବା ଅଛୁ କାହିଁ କଉଁମତେ । ୧୦ ।
ଗୋପପୁରେ ଥିଲେ ଯେବଣ କାଳେ,
ନାନା କ୍ରୀଡ଼ା କଲେ ଗୋପୀଙ୍କ ମେଳେ,
ତହିଁ ଅଛୁ ଅବା କେଉଁ ସୁହାଗୀ,
ଏହାଙ୍କ ମନୋହାରୀ ପ୍ରାଣସଙ୍ଗୀ,
ସେ ଶ୍ରେଷ୍ଠନାୟିକା,
ହୋଇଲେ ହୋଇ ସେ ଅବା ରାଧିକା । ୧୧ ।
ଯେତେ ହୋଇଲେ ଗହନ୍ତ ଶୀ ନାରୀ,
ନ ଯୋଗାଇଛନ୍ତି ରାଜକୁମାରୀ,
ଏହୁ ତ ମନକୁ ନ ଆସଇ ନାହିଁ,
ସେ ପୁଣି ପରଯୁବତୀ ଅଟଇ,
ତା କାହିଁ ଭରରେ
ସେରନ୍ଧ୍ରୀ ହୋଇ କି ଘର କରିବେ । ୧୨ ।
ଷୋଳସହସ୍ରଏ ଦେବକୁମାରୀ,
ନେଉଥ ରାବଣ ବଳେ ନେଲା ହରି,
ବସ୍ତୁବର ମନେ ବରି ଯୁବତୀ,
କେବେହେଁ ତାକୁ ନୋହେ ସନମତି,
ରାବଣ ଅନ୍ତରେ,
ପୁଣି ସେ ନାରୀ ଗଲେ ସ୍ୱର୍ଗପୁରେ । ୧୩ ।
ନାରକାସୁର ପୁଣି ନେଲା ହରି,
ଏହୁ ପ୍ରଭୁ ତାଙ୍କ ମାନ ଉଦ୍ଧରି,
ନାରକା ମାରି ଦ୍ୱାରକା ଆଣିଲେ,
ସୁକୃତ ଦେଖି ତା ବଶ ହୋଇଲେ,
ଏ ଯହିଁ ନ ରୁଚି,
କପଟ ଯୁବତୀ କେମନ୍ତେ ରୁଚି । ୧୪ ।

ଗୋପକନ୍ୟା ବୋଲି ବୋଲନ୍ତି ଯାହା,
କେମନ୍ତେ ଅବା ନ ଲୋଡ଼ିବେ ତାହା,
ଘର କରୁଛନ୍ତି ଭର୍ତ୍ତାନ୍ତି ଘେନି,
ଦାଣ୍ଡ ଗୁଆଲୀ ସ୍ୱପଟ କାମିନୀ,
ବାଲକାଲ ସଙ୍ଗ,
କେବଳ ତାହାଙ୍କ ଥିବ କଥା ରଙ୍ଗ । ୧୫ ।
କି ଅବା ହୋଇଲେ ହୋଇବ ଏହି,
ବସ୍ତୁରେ ଆଉ ଆନ ନ ଦିଶଇ,
ସ୍ୱପ୍ନାର କଥା କହାଇ ଆଣିମା,
ତେବେ ସିନା ଏଥି ତଥ୍ୟ ଜାଣିମା,
ମହିମା ଯାହାର,
ବ୍ରହ୍ମାଦି ଶଙ୍କରଙ୍କୁ ଅଗୋଚର । ୧୬ ।
ଏସନ ହୃଦରେ ପାଣ୍ଡି ସୁନ୍ଦରୀ,
କହନ୍ତି ପ୍ରଭୁ ଶ୍ରୀ ଚରଣ ଧରି,
ଶୁଣ ମହାପ୍ରଭୁ କରୁଣାନିଧି,
ଏ ତ ଅତିବଡ଼ ଦୁର୍ଗମ ସନ୍ଧି,
ଫେଡ଼ି କହ ତୁମ୍ଭେ,
ଯେମନ୍ତେ ପରତେ ପାଇବୁ ଆମ୍ଭେ । ୧୭ ।
ପ୍ରଭୁଙ୍କ ମନକୁ ବନ୍ଧିଲ ଯେହୁ,
ଆମ୍ଭ ଉପରେ ଅଧିକାରୀ ସେହୁ,
ତାଙ୍କଠାରୁ ଶିଖି ଶ୍ରୀଅଙ୍ଗ ସେବା,
ପ୍ରଭୁ ମନ ତୋଷି ଜାଣିମୁଁ ଅବା,
କୃପାକର ତୁମ୍ଭେ,
ତାଙ୍କ ଚରଣେ ଖଟିଥିବୁ ଆମ୍ଭେ, । ୧୮ ।
ନାମ କେଉଣ କାହୁଁ ତାଙ୍କ ବାସ,
କି ଅବା ସ୍ତ୍ରୀ କି ଅବା ପୁରୁଷ,

କହୁବା ଗୋସାଇଁ ଏଥି ସନ୍ଧାନ,
ଶୁଣି ସନ୍ଦେହ ଛାଡ଼ୁ ମୋର ମନ,
ମୁଁ ଦାସୀ ତୁମ୍ଭର,
ମୋହୋଠାରେ କୃପା କର ଅନ୍ତର । ୧୯ ।
ଶୁଣି ସନ୍ତୋଷ ହୋଇଲେ ମୁରାର,
ଅନ୍ତର୍ଗତ କଥା ଅନ୍ତେ ସହର,
ଶୁଣ ଗୁଣବତୀ ପ୍ରାଣର ପ୍ରିୟା,
ଯାହା ପଚାରିଲ କହୁଁ ତାହା,
ତୁମ୍ଭ ହିତକଥା,
ବୁଝିଲେ ଯେବେ ମନେ ନାହିଁ ବ୍ୟଥା । ୨୦ ।
ଏବେ ଆଜ ତୁମ୍ଭ ପୁରକୁ ଯାଅ,
ଯୁବତୀମାନଙ୍କୁ ବୁଝାଇ କହ,
ସମସ୍ତେ ପୁଣି ତ ହୋଇବ ଶ୍ରୋତା,
କାହୁଁ ଛାଡ଼ିବ ଆମ୍ଭ ମନ ବ୍ୟଥା,
ତୁମ୍ଭେହେଁ ତରିବ,
ତୁମ୍ଭ ଯୋଗୁ ଆମ୍ଭ ତାପ ହାରିବ । ୨୧ ।
ଶ୍ରୀମୁଖ ସନ୍ଦେଶ ପାଇ ସୁନ୍ଦରୀ,
ବିଜୟ କଲେ ସତ୍ୟଭାମା ପୁରୀ,
ସବୁ ସପତ୍ନୀମାନଙ୍କୁ ଗାଇ,
ପ୍ରଭୁ ଚରିତ କହିଲେ ବୁଝାଇ,
ସବହେଁ ଚକିତ,
ସେହି କଥାରେ ପୁହାଇଲେ ରାତ୍ର । ୨୨ ।
ନିଶି ପାହିଲା, ନିତ୍ୟକର୍ମ ସାରି,
ପ୍ରଭୁ ଛାମୁକୁ ଚଳିଲେ ସୁନ୍ଦରୀ,
ପୂରି ହରଷରେ ଦର୍ଶନ କରନ୍ତି,
ଶ୍ରୀମୁଖ ଦର୍ଶନେ ପାପ ହରନ୍ତି,

ପ୍ରିୟ୍ବା ପତ୍ର ପାଦେ,
ଶରଣ ଗଲ ଦେବ ଅପ୍ରମାଦେ ।୨୩ ।
ଇତି ଶ୍ରୀ ରହସ୍ୟ-ମଞ୍ଜରୀ ତୃତୀୟ ଛନ୍ଦେ,
ଯୁବତୀରହ୍ରାଦ ଦର୍ଶନାଦ ବନ୍ଦେ,
ଚତୁର୍ଥ ଛନ୍ଦ ବର୍ଣ୍ଣନେ କେବଣ କେବଣ,
କହିବାକୁ ଆଜ୍ଞା ହୋଇ ଶ୍ରୀଭଗବାନ । ୩ ।

---

## ଚତୁର୍ଥ ଛାନ୍ଦ ।

ଭୂପାଳ ବୃଟଗଣ ଗୀୟତେ ।
ଜୟ ଜୟ ତୁ ଜୟ ପରମାନନ୍ଦ,
ଜୟ ଅନାଦ ଅଚ୍ୟୁତ ଆଦିକନ୍ଦ । ୧ ।
ଜୟ ଜୟ ତୁ ଜୟ କରୁଣାସିନ୍ଧୁ,
ଜୟ ଯାଦବକୁଳ-କୁମୁଦ-ଇନ୍ଦୁ । ୨ ।
ଜୟ ଜୟ ତୁ ଜୟ ସଙ୍କଟସେନ୍ତା,
ଜୟ ଶରଣରକ୍ଷଣ ଯାର ବାନା । ୩ ।
ଜୟ ଜୟ ତୁ ଜୟ ଦେବାଧିରାଜ,
(ଜୟ) ଶଙ୍ଖ ଚକ୍ର ଗଦା ପଦ୍ମ ଚତୁର୍ଭୁଜ । ୪ ।
ଜୟ ଜୟ ତୁ ଜୟ ପରମଶୋଭା,
ଜୟ କୋଟିକନ୍ଦର୍ପ-ମୂରତି-ଆଭା । ୫ ।
ଜୟ ଜୟ ତୁ ଜୟ ବୈକୁଣ୍ଠବାସ,
ଜୟ ମୁନିଙ୍କ ମନ-ସରସୀ-ହଂସ । ୬ ।

---

ନୀଳଗିରି ଚରିତ ସମ ଦରଶନ ବାଣୀରେ ଗାଇବ (ଘ)
ନଟ ନାରାୟଣ ବାଣୀରେ ଗାଇବ (ଚ) ।
୨-୧-(ଗ) ପୋଥିରେ ତୁ ସ୍ଥାନେ ହେ ପଠିତ ।

*

ଜୟ ଜୟ ତୁ ଜୟ ଗରବଗଞ୍ଜା,
ଜୟ ଦନୁଜକୁଳ-ପ୍ରବଳ-ଭଞ୍ଜା । ୭ ।

ଜୟ ଜୟ ତୁ ଜୟ ପୁରୁଷବର,
ଜୟ ଯାର କଙ୍କର ବ୍ରହ୍ମାଦ ସୁର । ୮ ।

ଜୟ ଜୟ ତୁ ଜୟ ବିବୁଧ ଈଶେ,
ଜୟ ଅଚ୍ୟୁତାଗ୍ରଜ-ଅନୁଜ ପ୍ରବେଶେ । ୯ ।

ଜୟ ଜୟ ତୁ ଜୟ ମହିମାମେରୁ,
ଜୟ ଭଗତ ନିମନ୍ତେ ଅବତରୁ । ୧୦ ।

ଜୟ ମୀନମୂରତ ଜଳଧିବ୍ୟାପୀ,
ଜୟ କୂରୁମ ବରାହ ମହାରୂପୀ । ୧୧ ।

ଜୟ ନରକେଶରୀ ବାମନ ହରି,
ଜୟ ପରଶୁଧର କୋଦଣ୍ଡଧାରୀ । ୧୨ ।

ଜୟ ହଲଧରରୂପ ତୁମ୍ଭେ ସ୍ୱାମୀ,
ଜୟ ବଉଧ କଲଙ୍କି ଅନ୍ତର୍ଯାମୀ । ୧୩ ।

ଜୟ ବଇଲୋଚନ-ଚକୁରଙ୍କା,
ଜୟ ରାବଣ ମାରି ନିଆଅ ଲଙ୍କା । ୧୪ ।

ଜୟ ପୁତନାଥନ-ପରାଣପିଆ,
ଜୟ ପାଦେ ଶକଟା ପରାଣନିଆ । ୧୫ ।

ଜୟ ତୁ ବକାସୁର ବଗ୍ଗକଚଡ଼ା,
ଜୟ ଯୋଦ୍ଧୋଡ଼ ଷଣ୍ଢ-ଗିଶବମୋଡ଼ା । ୧୬ ।

ଜୟ ଅଜଗର ବର ମୁଣ୍ଡଫୋଡ଼ା,
ଜୟ କାଳନ୍ଦୀ-କାଳୀ-ମଣ୍ଡଳଚଢ଼ା । ୧୭ ।

ଜୟ ଇନ୍ଦ୍ରବାଦେ ମନ୍ଦରଧରା,
ଜୟ କେଶୀଦଇତ ମନ୍ଥନମରା । ୧୮ ।

ଜୟ କୁଳପାଳକା ମାତୃରୂପିଣା,
ଜୟ ମାଳମାଳୁଆ ମହିଳା-ଲୋଡା । ୧୯ ।

ଜୟ ଅଶେଷ କୋଟି ବ୍ରହ୍ମାଣ୍ଡନାଥ,
ତୁମ୍ଭ ମହିମା କେହୁ କରିବ ଅନ୍ତ । ୨୦ ।

ଯାର ପାଦ ପଦ୍ମୁଁ ମକରନ୍ଦ ଝରି,
ଗଙ୍ଗାଜଳ ସ୍ୱରୂପେ ଜଗତ ତାରି । ୨୧ ।

ଏହି ପ୍ରକାରେ ଚରଣୁଁ ଶିରଯାଏ,
କେତେଠାରୁ କେତେ କେତେ ଜାତ ହୋଏ । ୨୨ ।

ଜଳ ଥଳ ଅନଳ ପବନ ଶୂନ୍ୟ,
ବ୍ରହ୍ମା ଶଙ୍କର ଉମା ସୁରୁଜ ସୋମ । ୨୩ ।

ଯମ କୁବେର ଇନ୍ଦ୍ର ବରୁଣ ଆଦି,
କହି ଲୋଡ଼ିଲେ ବଶା ହୋଇବ ବାଧି । ୨୪ ।

ଏଡ଼େ ପ୍ରଭୁର କେହୁ ଜାଣିମ ହସ୍ଥା,
କୋଟି ବ୍ରହ୍ମାଣ୍ଡେ ଘୋଟିଛି ଯାର ମାୟା । ୨୫ ।

ଆମ୍ଭେ କେବଳ ତୁମ୍ଭ ଚରଣେ ଦାସୀ
ସେବା ନ ଜାଣୁ ଆଶ୍ରେ କରିଛୁ ଆସି । ୨୬ ।

ଗ୍ୟାନେ ଅଗ୍ୟାନେ ଯେତେ କରିଛୁ ଦୋଷ,
କ୍ଷମା କରିବା ପ୍ରଭୁ ଶରଣ ଦାସ । ୨୭ ।

ଯାହା ଆଜ୍ଞା ହୋଇଅଛୁ କହିବାକୁ,
ତାହା ସମସ୍ତେ ଆସିଛୁ ଶୁଣିବାକୁ । ୨୮ ।

ମହାପ୍ରଭୁଙ୍କର ଭଲ ଯେଉଁ କଥା,
ତାହା ଶୁଣି ଛାଡ଼ିବ ସବୁରି ବ୍ୟଥା । ୨୯ ।
ତୁମ୍ଭ ଚିନ୍ତାରେ ଆମ୍ଭେ ସକଳେ ଦୁଃଖୀ,
ପ୍ରଭୁ ପ୍ରସନ୍ନେ ଆମ୍ଭଙ୍କୁ କର ସୁଖୀ । ୩୦ ।

ଶୁଣି ସନ୍ତୋଷ ହୋଇଣ ପୀତବାସ,
କର ପ୍ରସାରି ବୋଇଲେ, ଆସ ଆସ । ୩୧ ।

ପ୍ରଭୁ ହରଷମୁଖ ସୁନ୍ଦର ଦେଖି,
ଅଷ୍ଟ ପାର୍ଶ୍ୱେ ବସିଲେ ଅଷ୍ଟ ସଖୀ । ୩୨ ।

ଯେତେ ଯୁବତୀପଟଳ ପିଞ୍ଚୁଆଣ,
ସବୁ ରହିଲେ ପ୍ରଭୁ ଚାହୁଁଣେ ପୂରି । ୩୩ ।

ଅପସରଙ୍କୁ ଆହ୍ଳାଦ ଦେବରାଜେ,
ରତ୍ନପଲଙ୍କେ କରଅଛନ୍ତି ବଜେ । ୩୪ ।

ସବୁ ଠାକୁରାଣୀଙ୍କର ସ୍ତବ ଯାହା,
ଦେବଦୁର୍ଲ୍ଲଭ-ଦାସ ପାଇଲୁ ତାହା । ୩୫ ।

(ଗାହା) ଇତି ଶ୍ରୀ ରହସ୍ୟମଞ୍ଜରୀ ଚତୁର୍ଥ ଛାନ୍ଦେ,
ଦିବ୍ୟାଙ୍ଗନାବୃନ୍ଦ ସ୍ତବରାଜ ବନ୍ଦେ,

ପଞ୍ଚମ ଛାନ୍ଦ ବର୍ଣ୍ଣନେ କେବଣ ମହିମା,
କହିବାକୁ ଆଜ୍ଞା ହେବ ଶ୍ରୀପୁରୁଷୋତ୍ତମ । ୪ ।

---

## ପଞ୍ଚମ ଛାନ୍ଦ ।

✻୦✻

ରାଗ—ଚକ୍ରକେଳି ।

ଏଥୁ ଅନ୍ତରେ ଶୁଣିମା ସୁଜନ,
ରସ ରହସ୍ୟ-ମଞ୍ଜରୀ ବିଧାନ । ୧ ।
ପ୍ରଭୁ ପ୍ରିୟାନ୍ତ ପାର୍ଶ୍ୱେଣ ବସାଇ,
ତାଙ୍କୁ ସାତ୍ତ୍ୱିକ୍ୟଭାବରେ ମିଶାଇ । ୨ ।

ତୁମ୍ଭେ ଶୁଣ ରୁକ୍ମିଣୀ ଗୁଣବନ୍ତୀ,
ମିତ୍ରବିନ୍ଦା ସୁନନ୍ଦା ଶଙ୍ଖାବତୀ । ୩ ।

ଲକ୍ଷ୍ମଣା ସୁଶୀଳା ସିନ୍ଧୁ ସୁତା,
ଜାମ୍ବବତୀ ସହିତେ ଯେତେ କାନ୍ତା । ୪ ।

ସାତ ପାଞ୍ଚ ଉପରେ ଅଧିସ୍ଵାତ୍ରୀ,
ତୁମ୍ଭେ ଶ୍ରୀକୃଷ୍ଣଙ୍କର ରାଜାଙ୍କ ପଟ୍ଟ । ୫ ।

ଯାହା ପଚାରିଲ କଥା ଦୁର୍ଲ୍ଲଭ,
ଶିବ ଉମା ଶୁଣିବାକୁ ସୁଲଭ । ୬ ।

ଦିବ୍ୟ ଶୁଦ୍ଧ ସାରୂପ୍ୟ ବୁଦ୍ଧି ଯାର,
ଏହା ଶୁଣି ତ ଶରଧା ମୋହର । ୭ ।

ତୁମ୍ଭେ ରାଜାଙ୍କ କେମା ରଜଗୁଣ,
ତୁମ୍ଭ ସଙ୍ଗେ କେ ଅଛୁ ବଡ଼ ପଣ । ୮ ।

ରାଧା ସାରୂପ୍ୟା, ରାଜପୀ ରୁକ୍ମିଣୀ,
ଯାହା କହୁଛୁ ବେଦ ଅଥର୍ବାଣୀ । ୯ ।

ଏହା ଶୁଣି ସିଂହ ହୋଏ ଶୃଗାଳ,
ଶୃଗାଳହିଁ ହୋଏ ସିଂହ ପ୍ରବଳ । ୧୦ ।

ସିଂହ ଶୃଗାଳ ପଥର ମହିମା,
ପ୍ରେମ-ଭକ୍ତସ୍ଵାମାନେ ତା ଜାଣିମା । ୧୧ ।

ତୁମ୍ଭ ରଜଗୁଣ ଯେବେ ତେଜିବ,
ଶୁଦ୍ଧ ସାରୂପ୍ୟ ଭାବରେ ଭଜିବ । ୧୨ ।

ତେବେ ଲଭିବ ସୁଧାମସ୍ଵେ ରସ,
ହିଂସା ବହିଲେ ସବୁ ସିଦ୍ଧ ନାଶ । ୧୩ ।

ତୁମ୍ଭେ ନ ବୁଝି ବୋଲ ନିଜ କଥା,
ଆମ୍ଭେ ମନରେ ପାଉଥାଉ ବ୍ୟଥା । ୧୪ ।

ଯେବେ ଶୁକ ଚଇତନେ ଶୁଣିମ,
ହେଜ ବୁଝି କଥା ମନେ ଗୁଣିମ । ୧୫ ।

ତେବେ କହୁବା ଅନ୍ତର୍ଗତ କଥା,
ଯହିଁ ପାଇଁ ଆସନ୍ତି ଏତେ ଅବସ୍ଥା । ୧୬ ।

ଗୋପୀ ପ୍ରେମ ମାହାତ୍ମ୍ୟ ନାମେ ପାଠ,
ଅଷ୍ଟାଦଶ ପୁରାଣ ବାଣୀ ମଧ୍ୟେ ଶ୍ରେଷ୍ଠ । ୧୭ ।

ପ୍ରେମ-ଭକ୍ତସ୍ବାମାନଙ୍କର ଆସ୍ଥା,
ଯତ୍ନ କରି ମୁଁ ଥୋଇଅଛୁ ଯଥା । ୧୮ ।

ଗୋପୀ ଗୁଣ ପରମାଣି ଲହୁଛୁ,
ଆଜଯାଏ କାହାକୁ ନ କହୁଛୁ । ୧୯ ।

କହୁ ଲୋଡ଼ିଲେ କେ ତାହା ବୁଝିବ,
ବାଧ୍ୟ ନବନ୍ଧ ସଗୁଣେ ଯୁଝିବ । ୨୦ ।

ଘୃଷ୍ଟ ଆକଟ କଥା ଶ୍ରୋତା ଦେଖି,
କହୁଅଛନ୍ତି ଶୁଣ ପ୍ରାଣସଖୀ । ୨୧ ।

ବ୍ରହ୍ମା ରୁଦ୍ର ଯୋଗୀନ୍ଦ୍ର ମୁନି ଯତି,
ନ ଜାଣନ୍ତି ଏମାନେ ମୋର ପ୍ରୀତି । ୨୨ ।

ମନ ଜବନ ଆତ୍ମା ପରଗୁଣ,
ଲକ୍ଷ୍ମୀ ସହିତେ ନ ଜାଣନ୍ତି ପୁଣ । ୨୩ ।

ମୋର ବୈକୁଣ୍ଠେ ମନ ନ ରହଇ,
ସ୍ୱର୍ଗ ବସ୍ୱର୍ଗ ଯେତେ ସୃଷ୍ଟି ଭୂଇଁ । ୨୪ ।

ଗୋପୀ ବହାରସ୍ଥଳୀ ଯେଉଁ ସ୍ଥାନ,
କୋଟି ବୈକୁଣ୍ଠ ନୁହଇ ସମାନ । ୨୫ ।

ସେହି ସ୍ଥାନ ସୁମରି ମୋର ମନ,
ନିରନ୍ତର ହୋଇଥାଇ ଉଛନ୍ନ । ୨୬ ।

ଗୋପୀ ବନ୍ଧୁ ଜୀବନ ଏତେ ସର,
ଫେଡ଼ି କହୁଲୁ ଶୁଣ ସଂନ୍ୟାସୀ । ୨୭ ।
ଯମ, ନିୟମ, ଆସନ, ପ୍ରାଣାମ,
ପ୍ରତ୍ୟାହାର, ଧ୍ୟାନକ, ଧାରଣା । ୨୮ ।
ଏହୁ ସମାଧି ଆଦି ଅଷ୍ଟଯୋଗ,
ସିଦ୍ଧ ଯୋଗୀମାନଙ୍କ ଆତ୍ମାଭୋଗ । ୨୯ ।
ଯୋଗ ସାଧି କୋଟି କଳ୍ପ ଜୀଅନ୍ତି,
ଗୋପୀସ୍ୱଭାବକୁ ଏ ସରି ନୁହନ୍ତି । ୩୦ ।
ଗୋପୀ ବନ୍ଧୁ କେ ଜାଣେ ମୋର ମନ,
ସେବା ଧର୍ମ ଆଗୁର ଭୁଲ କର୍ମ । ୩୧ ।
ମନ ଗତି ସରି ଯା ସତ୍‌କର୍ମ,
ଗୋପୀମାନଙ୍କ ବନ୍ଧୁ କେ ଜାଣିମ । ୩୨ ।
ଯଜ୍ଞ ଦାନ ତପ କର୍ମ ଆଚରି,
ନାନା ତୀର୍ଥ ବ୍ରତ ନିରାହାରୀ । ୩୩ ।
ଏମାନେ କେହ୍ୱେ ମୋତେ କାହିଁ ପାଇବେ,
ଯେତେ ଶ୍ରମ ପାଇ ଆତ୍ମା ଦହିବେ । ୩୪ ।
ବେଦ ଶାସ୍ତ୍ର ପୁରାଣ ଉତ୍ତରଂ,
କେହୁ ନ ବୁଝଇ ମୋର ଚତ୍ତର । ୩୫ ।
ଗୋପୀମାନଙ୍କ ଭର୍ତ୍ସନା ବଚନ,
ମୋର ମନ ଜୀବନକୁ ରୋଚନ । ୩୬ ।
ତାଙ୍କ ଗାଳି ଭିତରେ ଯେତେ ଭାବ,
ବ୍ରହ୍ମା ବେଦେ କରିବ କାହିଁ ଠାବ । ୩୭ ।
ମୋର ମାୟାରେ ମୋହିତ ଜଗତ,
ଗୋପୀମାୟାରେ ମୁହିଁ ସେହି ମତ । ୩୮ ।

ଯେହ୍ନେ ଜଗତ ଜନଙ୍କ ବନ୍ଦିତ,
ମୋର ଅନୁଗ୍ରହ ବାଞ୍ଛା କରନ୍ତି । ୩୯ ।

ଗୋପୀ ପ୍ରେମ ଅନୁଗ୍ରହ ଆକାଂକ୍ଷା,
ସେହିମତ ମୋ ନିରନ୍ତରେ ବାଞ୍ଛା । ୪୦ ।

କେତେ କହିବା ବଚନେ ବସ୍ତାଣ,
ଜୀବ ଥିବ କି ସେ ଗୁଣ ସୁମରି । ୪୧ ।

ମୋର ନାସ୍ତିକେ ସେ କି ଜୀଇଥିବେ,
ଫେଡ଼ି କାହା ଆଗେ ଦୁଃଖ କହିବେ । ୪୨ ।

କେହି ରଖିବ ମୋତେ ତାଙ୍କୁ ଦେଇ,
ଏହା ଅର୍ଜିଲି ଏତେ କାଳେ ମୁହିଁ । ୪୩ ।

ମୋତେ ସମ୍ଭାଳନ୍ତା ଥିଲି ଜଣେକ,
ତାହା ପରି କେ ହୋଇବ କ୍ଷଣେକ । ୪୪ ।
ମୋର ବେଦନା ସେ ଅଙ୍ଗେ କାଣ୍ଟିଇ,
ମୋର ନିମନ୍ତେ ପ୍ରାଣ ମୂରୁଛଇ । ୪୫ ।

ଲୁହୁ ଯାଇଁ ତାହାର ହିତପଣ,
ମୋର ତନୁ ଜୀବନ ଧନ ପ୍ରାଣ । ୪୬ ।
କୋଟି ବ୍ରହ୍ମାଙ୍କୁ ଜିଣି ଯାର ବୁଦ୍ଧି,
କୋଟି ଦୁର୍ଗା ଯାହାକୁ ସେବ ସିଦ୍ଧି । ୪୭ ।
କୋଟି ରମ୍ଭା ଉର୍ବଶୀ ରୂପେ ଗଞ୍ଜି,
ଯାକୁ ସେବନ୍ତି ଇନ୍ଦ୍ର, ଚନ୍ଦ୍ର, ସୂର୍ଯ୍ୟେ । ୪୮ ।
କୋଟି ବ୍ରହ୍ମାଣ୍ଡେ ଯେହୁ ଅଧିକାରି,
ତା'ର ମହିମା କେହୁ କହି ପାରି । ୪୯ ।

ରାଧା ଠାକୁରାଣୀଙ୍କ ପ୍ରାଣସଖୀ,
ତାଙ୍କ ଲାଗି ସେ ନିରନ୍ତରେ ଦୁଃଖୀ ।୫୦।

ତାଙ୍କୁ କି ପ୍ରକାରେ ଶାନ୍ତ କରାଇ,
କଉଁ ସଞ୍ଜୀବକରଣୀ ପିଆଇ । ୫୧ ।

କ୍ଷଣ ନ ଦେଖି ମୋତେ ଯେ ନୟନେ,
ବାଇ ହୋଇ ବୁଲନ୍ତି ବନେ ବନେ । ୫୨ ।

ଏତେଦିନ ସେ କାହିଁଥିବ ଜୀଇ,
ସଖୀ ମରିବ ତାଙ୍କ ଦୁଃଖ ଘୁହିଁ । ୫୩ ।

ସଖୀ ହସ୍ତରେ ଗୋପୀହିଁ ମରିବେ,
ଆଉ କାହା ଘୁହିଁ ଦେହ ଧରିବେ । ୫୪ ।

ଯେଉଁକାଳେ ମୁଁ ରାସକ୍ରୀଡ଼ା କଲି,
ହେଲେ ଠାକୁରାଣୀଙ୍କି ନ ଲେଡ଼ିଲି । ୫୫ ।

ଏତେ ମାତ୍ରକେ ଭେଲା ଉପାଇଲି,
ଅନ୍ତମାନେ ଜୀବନେ ମରିଥିଲି । ୫୬ ।

ନାନାପ୍ରକାରେ ହୋଇଲି ନବମା,
ନବ ଟଳିଲେ ହୁଅନ୍ତି ଦଶମା । ୫୭ ।

ଦଶ ମାତ୍ରକେ କଥା ସରିଯାନ୍ତା,
ତୁମ୍ଭ ପାଏ କମ୍ପା କଥା ଥାଆନ୍ତା । ୫୮ ।

ନାନା ଉପାୟମତେ ତାର ସଖୀ,
ତାର ଜୀବନ ମାତ୍ର ଥିଲି ରଖି । ୫୯ ।

ତହୁଁ ଯେମନ୍ତ ହୋଇଲି ବେବସ୍ଥା,
ସେ କି କହିଲେ ସରିବ ଅବସ୍ଥା । ୬୦ ।

କ୍ଷଣେ କ୍ଷଣେ ଯେ ପ୍ରମାଦ କରଇ,
ସେ କି ଏତେ ଦିନେ ଦେହ ଧରଇ । ୬୧ ।

କଉଁ ଦଇବ ମୋତେ ଛନ୍ଦିଗଲା,
କାହୁଁ ଆଣି ରେ କାହିଁ ବନ୍ଦୀ କଲା । ୬୨ ।

*

ଯାଇ ଆସିବ ବୋଲି ମୁଁ ଅଛିଲି,
ଆସି ଗହ୍ୱରରେ ପଡ଼ି ରହିଲି । ୬୩ ।

କଥା ବାଣ୍ଡିଲେ ନ ଆସଇ କିଛି,
ବୁଦ୍ଧି ହରାଇ ଏବେ ରହିଅଛି । ୬୪ ।

ଏତେ କହି କପାଳେ କର ମାରି,
ମୂର୍ଚ୍ଛା ଯାଇଁ ପଡ଼ିଲେ ବସୁନ୍ଧରୀ । ୬୫ ।

ଧାଇଁ ଧଇଲେ ଅଷ୍ଟପାଟବଂଶୀ,
କ୍ରୋଧେ ଗଦଗଦ ହୋଇ ସୁକେଶୀ । ୬୬ ।

ସିଞ୍ଚି ବିଞ୍ଚଣ ସଚେତ କରନ୍ତି,
ନନା ପ୍ରକାରେଣ ମୋହ କରନ୍ତି । ୬୭ ।

ଗନ୍ଧ ଚନ୍ଦନ କର୍ପୂର କସ୍ତୁରୀ,
ପ୍ରଭୁ ଶ୍ରୀଅଙ୍ଗେ ବୋଳନ୍ତି ଚତୁରୀ । ୬୮ ।

କେଶ ବାସ ସୁବେଶ କରି ବାଳୀ,
ବେଢ଼ି ଭ୍ରମର ଆଳଟନ୍ତି ଢାଳି । ୬୯ ।

ଦିବ୍ୟ ଆସନେ ବଜେ କରାଇଲେ,
ପାଟ ଅପସ୍ତରେ ଆଚ୍ଛଜାଇଲେ । ୭୦ ।

ତାଳ ମୃଦଙ୍ଗ ରବା ବୀଣା ବଂଶୀ
ନୃତ୍ୟ ଗୀତ ଆରମ୍ଭିଲେ ସୁକେଶୀ । ୭୧ ।

ପ୍ରଭୁ ଚମକି ଉଠେ ପୁଣ ପୁଣି,
ରାଧା ରାଧା ଉଚ୍ଚାରି ମୁଖେ ବାଣୀ । ୭୨ ।

ଘଡ଼ି ଦୁଇରେ ସଲକ୍ଷି ବସିଲେ,
ରୁକ୍ମିଣୀଙ୍କ ମୁଖ ଚାହିଁ ହସିଲେ । ୭୩ ।

ଯାଏ ପଡ଼ଣ ହୋଇ ଶୁଭ୍ରକେଶୀ,
ମୁଖେ ତାମ୍ବୂଳ ଯୋଗାଇଲେ ଆସି । ୭୪ ।

ଅଷ୍ଟ-ପାଟବଂଶୀ-ପଦ୍ମ-ଚରଣେ,
ଦେବ ଶରଣ ଗଲ ଅନୁକ୍ଷଣେ । ୨୫ ।
(ଗାହା) ଇତି ଶ୍ରୀ ରହସ୍ୟମଞ୍ଜରୀ ପଞ୍ଚମଛାନ୍ଦେ,
ଅନ୍ତର୍ଯାମୀ-ଅନ୍ତଃକରଣ-ଜ୍ଞାତ ବନ୍ଦେ ।
ଷଷ୍ଠମ ଛାନ୍ଦ ବର୍ଣ୍ଣନେ କେବଣ କେବଣ ଗ୍ୟାନ,
କହିବାକୁ ଆଜ୍ଞାହେଉ ଦେବକୀ ଦେବୀର ନାନ । ୫ ।

—):o:(—

## ଷଷ୍ଠ ଛାନ୍ଦ ।

—:o:—

ମଙ୍ଗଳ ଗୁର୍ଜ୍ଜରୀ ଘଟଗଣ ଗୀୟତେ ।
(ରାମ ବିଷ୍ଣୁ ପ୍ରଥମଛାନ୍ଦରେ ଗାଇବ)
ପ୍ରଭୁଙ୍କ ଏସନ ଘଟ ପ୍ରିୟାଗଣ ଦେଖି,
ସ୍ତମ୍ଭୀଭୂତ ହୋଇଣ ରହିଲେ ସବସଖୀ ଯେ । ୧ ।
ଲକେ ଲେଚ ଲେଚ ହୋଇ ରହିଲେ ତରୁଣୀ,
କାହାର ମୁଖରୁ ଫୁଟି ନ ଆସଇ ବାଣୀ ଯେ । ୨ ।
ରବା ବୀଣା ବଂଶୀ ତାଳ ମୃଦଙ୍ଗ ପକାଇ,
ଢଳିଣ ପଡ଼ିଲେ ମୂର୍ଚ୍ଛେ ମୂର୍ଚ୍ଛି ମାର ହୋଇ ଯେ । ୩ ।
ଆଇ ଆଇ ଗଦଗଦ ହୋଇଣ ସୁନ୍ଦରୀ,
କାନ୍ଦିଣ ଉଠିଲେ ଶୋକ ସମ୍ଭାଳି ନ ପାରି ଯେ । ୪ ।
କେହୁ ମାନଭରେଣ ବସିଲ ମଥା ପୋତି
ପ୍ରଭୁର ଉହାଡ଼େ କାନ୍ଦେ କେବଣ ଯୁବତୀ ଯେ । ୫ ।
ସଖୀଙ୍କର କୋଧ ଦେଖି ଶ୍ରୀକୃଷ୍ଣକଦୁଲାଳୀ,
କର ଯେନ ପଛକୁ ଠାରିଲେ ରହି ବୋଲି ଯେ । ୬ ।
ପ୍ରଭୁଙ୍କ ସମ୍ମୁଖରେ ରହି ଶ୍ରୀମତୀ ରୁକ୍ମିଣୀ,
କରପଦ୍ମ ଯୋଡ଼ି ଦେବୀ ପଚ୍ଛରନ୍ତି ବାଣୀ ଯେ । ୭ ।

ଅଶେଷ ଈଶ୍ୱର ତୁମ୍ଭେ ଶୁଣ ଦେବରାଏ,
ପଚାରି ଲୋଡ଼ଇ ନାଥ ଏକଇ କଥାଏ ସେ । ୮ ।

କୋପ ନ କରିବ ଯେବେ ପ୍ରଭୁ ଜଗନ୍ନାଥ,
ଯାହା ପଚାରିବି ତାହା କହିବ ନିଶ୍ଚିତ ସେ । ୯ ।

ପ୍ରଭୁ ବୋଲୁଛନ୍ତି ତୁମ୍ଭେ ଶୁଣ ପ୍ରାଣପ୍ରିୟା,
ନ୍ୟାୟକୁ କି ଭେଖ ଅଛି କିପାଁ ବୋଲ ଏହା ଗୋ । ୧୦ ।

ଯାହା ପଚାରିବ ସତୀ କହିବଇଁ ସତ,
ତୁମ୍ଭ ମୁଖ ବୃନ୍ଦେ କରୁଛୁ ସୁକୃତ ଗୋ । ୧୧ ।

ବୋଲନ୍ତି ରୁକ୍ମିଣୀ ତୁମ୍ଭେ କହୁଥିଲ ଯାହା,
ଲୋଡ଼ିଥାଇ ଶ୍ରୀମୁଖରେ ମୁଁ ପଚାରିବି ତାହା ହେ । ୧୨ ।

ବ୍ରହ୍ମା ରୁଦ୍ର ଚନ୍ଦ୍ର ସୂର୍ଯ୍ୟ ନାଗ ବିଦ୍ୟାଧର,
ଯମ ନଇରୁତ ଇନ୍ଦ୍ର ଅନଳ କୁବେର ହେ । ୧୩ ।

ବରୁଣ ପବନ ଆଦି ଯେତେ ସୁପର୍ବାଣ,
ଏହି ନ ଜାଣିଲେ ତୁମ୍ଭ ଆତ୍ମା ପରିଗୁଣ ହେ । ୧୪ ।

ଧାର୍ମିକ ବିବେକ ଯୋଗୀ ଯତି ଦାନୀ ଧ୍ୟାନୀ,
ବ୍ରତରତୀ ବେଦାନ୍ତୀ ମହନୀ ମୁନି ଜ୍ଞାନୀ ହେ । ୧୫ ।
ଏମାନେ ହେ ନ ଜାଣନ୍ତି ତୁମ୍ଭର ମରମ
ସର୍ବକାଳେ ସେବା କରି ଯେତେ ଶ୍ରମ ଧର୍ମ ହେ । ୧୬ ।
ଏକମାତ୍ର ଗୋପିକା ଜାଣିଲେ ତୁମ୍ଭ ଗୁଣ,
ତାହାଙ୍କର ଗାଳି ତୁମ୍ଭେ ସ୍ତୁତି ପ୍ରାୟେ ମଣ ହେ । ୧୭ ।
ଏକା କରି ଗୋପିକା ତୁମ୍ଭଙ୍କୁ କୋଠ କଲେ,
ଆଉମାନେ ଭଜି ତୁମ୍ଭ ଲେଶ ନ ପାଇଲେ । ୧୮ ।
ସର୍ବ ସୁଖ ତେଜି ସେବା କରନ୍ତି ତୁମ୍ଭଙ୍କୁ,
କୋଟିଏ କଳ୍ପରେ କୃପା ନ କର ତାହାଙ୍କୁ ହେ । ୧୯ ।

ଏମାନଙ୍କ ଭକ୍ତ ଗଣ ହୋଇବ ଗୋସାଇଁ,
ଶ୍ରୁତିପନ୍ଥେ ସେବା ତ ବିଫଳ ଲେଖି ନାହିଁ ହେ । ୧୦ ।

ବୋଲନ୍ତି ମାଧବ ଶୁଣ ସୁବର୍ଣ୍ଣରଞ୍ଜନ,
ଯେ ଯେଉଁ ବାଞ୍ଛାରେ ମୋତେ କରନ୍ତି ଅର୍ଚ୍ଚନ ଗୋ । ୧୧ ।

ସେ ଫଳ ପ୍ରାପତ ତାଙ୍କୁ ଶୁଣସି ମୃଗାକ୍ଷି,
ଏଥି ମଧ୍ୟେ ସନ୍ଧମର୍ମ ଭିନ୍ନେ ଭିନ୍ନେ ଅଛି ଗୋ । ୧୨ ।

ଏମନ୍ତ ସେବାକୁ କୋଟି ମୁକ୍ତି ଦେଇ ପାରି,
ବିନା ଗୋପୀଭାବେ ଭକ୍ତି ଦେଇ ତ ନ ପାରି ଗୋ । ୧୩ ।

ସ୍ମରଭକ୍ତି ମଧ୍ୟେ ପ୍ରେମଭକ୍ତି ଅଟେ ସାର,
ସେ ଭକ୍ତି ଅଟଇ ବ୍ରଜ-ଗୋପୀମାନଙ୍କର ଗୋ । ୧୪ ।

ଗୋପୀଙ୍କି ଭଜିଲା ଭକ୍ତ ପ୍ରେମଭକ୍ତି ପାଇ,
ବିନା ପ୍ରେମ ଭକ୍ତିରେ ଦର୍ଶନ ମୋତେ ନାହିଁ ଗୋ । ୧୫ ।

ପ୍ରେମଭକ୍ତି ପ୍ରାପତ ଗୋପୀଙ୍କ ପରସଙ୍ଗେ,
ପୁଂଲିଙ୍ଗ ପାଲଟି ସ୍ତ୍ରୀ ହୁଅଇ ତତକ୍ଷଣ ଗୋ । ୧୬ ।

ଅଙ୍ଗସିଦ୍ଧ ହୋଇଲେ ମୋ ପାରୁଶରେ ରହି,
କୋଟି କଳ୍ପ ଗଲେ ହେଁ ପଲକେ ତାକୁ ନୋହି ଗୋ । ୧୭ ।

ପୁରୁଷ ଅଙ୍ଗରେ କେହି ଦର୍ଶନ କରିବ,
ମୁଣ୍ଡର ଉପରେ କେହି ମୁଣ୍ଡେକ ବନ୍ଧିବ ଗୋ । ୧୮ ।

ସ୍ତ୍ରୀ ସ୍ମ ବୃନ୍ଦ ମଧ୍ୟରେ ପୁରୁଷବର ମୂର୍ତ୍ତି,
ସେ ପୁରେ ପଶିବ କେ ପୁରୁଷଲିଙ୍ଗ ବହି ଗୋ । ୧୯ ।
ମୋହି ବିନୁ ନାହିଁ ତହିଁ ଦୋସର ପୁରୁଷ,
ସ୍ତ୍ରୀଶବୃନ୍ଦ ବେଢ଼ି ମୋର ସେବନ୍ତି ପାରୁଶ ଗୋ । ୩୦ ।
ପ୍ରେମ-ପୁଷ୍ଟି-ଭକ୍ତିସ୍ଥା ଲଭନ୍ତି ସେହି ସ୍ଥାନ,
ଆଉ ଭକ୍ତି ଦାସ୍ୟ ସଖ୍ୟ ବାତ୍ସଲ୍ୟ ଏ ଜାଣ ଗୋ । ୩୧ ।

ଏମାନେ ଲଭନ୍ତି ମୋର ବିଭୂତି ବିଭବ,
ଷୋଡ଼ଶ ବିଭୂତି ମଧ୍ୟେ ଯାର ଯହିଁ ଠାବ । ୩୨ ।

ଏଥିର ମୂଳବିଭୂତି ଅଛି ଯେଉଁ ସ୍ଥାନେ,
ସେ ମହାବିଭୂତି କାହିଁ ଲଭିବେ ଏମାନେ ଗୋ । ୩୩ ।

ସେ ମୂଳବିଭୂତି ସ୍ୱାନୁଭୂତି ମହାଭୂତ,
ଗୋପିକା ପ୍ରସନ୍ନେ ଭକ୍ତ ସେ ଧନ ଲଭନ୍ତି ଗୋ । ୩୪ ।

ସେ ମହାରାସମଣ୍ଡଳୀ ନିତ୍ୟ ବୃନ୍ଦାବନେ,
ତହିଁ ମୁଁ ବଞ୍ଚଇ ରାଧା ଅଙ୍ଗ ଆଲିଙ୍ଗନେ ଗୋ । ୩୫ ।

ତାଙ୍କ ରସଜଳେ ବୁଡ଼ି ନ ଜାଣଇ କିଛି,
କୋଟି କୋଟି କଳ୍ପ କେଉଁଣେ ବହି ଯାଉଅଛି ଗୋ । ୩୬ ।

କେନ ଜନେ ବିଗ୍ରହ ଅଇଲି ମର୍ତ୍ତ୍ୟପୁରେ,
ଜନମ ଲଭିଲି ନନ୍ଦ ବୃଷଭାନୁ ଘରେ ଗୋ । ୩୭ ।

ଗୋପୀମାନେ ଆଗ ଆସି ବାଟ ଚାହିଁ ଥିଲେ,
ଆମ୍ଭର ପ୍ରବେଶ ମାତ୍ରେ ଆସି ଆବୋରିଲେ ଗୋ । ୩୮ ।

ତାଙ୍କୁ ଘେନି ଗୋପପୁରେ ନାନା କ୍ରୀଡ଼ା କଲି,
ନିତ୍ୟସ୍ଥଳ ରାସ ନୃତ୍ୟ ବନେ ଭିଆଇଲି ଗୋ । ୩୯ ।

କେଉଁ ଯୋଗେ ଦଇବ ବିଚ୍ଛେଦ କଲା ଆଣି,
କ୍ଷଣକରେ କୋଟିଯୁଗ ତାଙ୍କ ବିନୁ ମଣି ଗୋ । ୪୦ ।

ପଶ୍ଚାତ ଆଣିଲ ସଖି ଯେତେ ଯେତେ କଥା,
ଥୋକାଏ କହିଲି ଆଦ ପୁରାଣ ବାରତା ଗୋ । ୪୧ ।

ଅଳପ ସୂଚିଲି ଅଥବାଣ ଶ୍ରୁତିସାର,
କହିଲଇଁ ଗୁହ୍ୟତତ୍ତ୍ୱ ନ କର ଅନ୍ତର ଗୋ । ୪୨ ।
ନ ଜାଣି ମନରେ କ୍ରୋଧ କର ପ୍ରାଣପ୍ରିୟା,
ବୁଝିଲ କି ଏବେହେଁ କହିଲୁଁ ଆମ୍ଭେ ଯାହା ଗୋ । ୪୩ ।

ପ୍ରଭୁଙ୍କ ଶ୍ରୀମୁଖୁଁ ଶୁଣି ପ୍ରବୋଧନା କଥା,
ବାହ୍ଡ ଯେ ସାତ୍ତ୍ୱିକ ଅନ୍ତର୍ଗତେ ଅଛ ବଥା ଯେ । ୪୪ ।

ଧଣ ବସି ପୁଛନ୍ତି ସକଳ କୁଳାଙ୍ଗନା,
ଦେବ ବୋଲେ ରଖ ମୋତେ ପ୍ରଭୁ ବନ୍ଦସେନ୍ତା ହେ । ୪୫ ।

ଇତ ଶ୍ରୀ ରହସ୍ୟମଞ୍ଜରୀ ଷଷ୍ଠ ଛାନ୍ଦେ,
ଗୋପିକା ପ୍ରେମଲକ୍ଷଣ ଭକ୍ତ ବନ୍ଦେ,
ସପ୍ତମ ଛାନ୍ଦ ବର୍ଣ୍ଣନେ କେବଣ କେବଣ ସୁଖ,
କହିବାକୁ ଆଜ୍ଞା ହେଉ ବଂଶୀଧର ମୁଖ ।



## ସପ୍ତମ ଛାନ୍ଦ ।

—ଃ()ଃ—

ରାଗ—ବ୍ଳେଖି—ସପନ ଚେତସ୍ତା ବାଣୀରେ ।

ଜନକର ନୃପନନ୍ଦନୀ ତ୍ରିଜଗଜନବନ୍ଦନୀ
ମାନ ଅଗ୍ନି ଦହୁଅଛୁ ସବୁର ଅଙ୍ଗ,
କ୍ଷଣେ କ୍ଷଣେ ହୃଦବୋଧ କ୍ଷଣେ କ୍ଷଣେ ଉଠେ କ୍ରୋଧ
କ୍ଷଣେ କ୍ଷଣେ ଅନୁଆନ ହୃଦେ ପ୍ରସଙ୍ଗ,
କନାକନ ହୋଇ ଯୁବତୀ,
ଏକକୁ ଆରେକ କଥାସନ୍ଧ ପୁଛନ୍ତି । ୧ ।

---

୪୫—କୁଳଙ୍ଗନା (ସମସ୍ତ ପୋଥିରେ)-ଓଡ଼ିଆରେ ଏହାର ବ୍ୟବହାର ଅଶୁଦ୍ଧ ମନେ କରୁନାହୁଁ, ଯଷ୍ଠୀତର ପରରୂପ ସନ୍ଧିର ତନ୍ତ୍ର ଏଠାରେ ପ୍ରଯୁଜ୍ୟ ।

୧—୫:—କୁନାକୁନ (ଗ), କାହା କର୍ଣ୍ଣେ କେହୁ ଯୁବତୀ (ଖ), କନାକନ, କୁନାକୁନ, କର୍ଣ୍ଣାକର୍ଣ୍ଣି (କାନେ କାନେ କହିବା) ଏକ ଅର୍ଥ ।

ଦଦନ୍ତ ଜମ୍ବେବଜେମା ଶୁଣ ତୁମ୍ଭେ ମର୍ତ୍ତ୍ୟଗ୍ରାମା
ବଡ଼ ଠାକୁରାଣୀଙ୍କଙ୍କ ଗ୍ରାମୁରେ ସୂଚ,
ପ୍ରଭୁଙ୍କ କଥାରେ ସନ୍ଧ ଏ ସୃଷ୍ଟିରେ ବଡ଼ ନାହିଁ,
ଏକା ତାଙ୍କ ଗୋପୀମାନେ ସବୁହୁଁ ଉଚ୍ଚ,
ମେଘଯାଏ କବଗ୍ଧ ଗ୍ମର,
ଏହାଙ୍କ ମନର ମୋହ ବନ୍ଦୀମନ୍ଦର । ୨ ।
କୁଚ ଉଚ୍ଚ ଗିରିବର ବର୍ତ୍ତୁଳ ଘଞ୍ଚ ରୁଚିର
ମନ୍ଦରଧର ବସ୍ତାର କରନ୍ତୁ ଲଗି,
ଆମ୍ଭର ଫଗୁଆ ଉର ସେ କାହୁଁ ଲଗିବ କର,
ତେଣୁକରି ଗ୍ଧି ଆମ୍ଭେ ତାଙ୍କୁ ଅଲଗି,
ଏବେ ତାଙ୍କ ଗ୍ରାମୁରେ ପୁଚ୍ଛ,
ଗୋପକନ୍ୟାମାନେ ଯେବେ ତାଙ୍କ ସାରନ୍ତ । ୩ ।
ସେ ଯେବେ ନର୍ତ୍ତ୍ୟ ବଳାଗ୍ଧୀ ତାଙ୍କ ଆଜ୍ଞା ପାଇଁ ଆସି
ଜନମ ଲଭିଲେ ଗୋପ ନଗରେ ଯାଇଁ,
ତେବେ କମ୍ପା ବ୍ରଜକାନ୍ତା ନକୁଚ୍ଛ ଜନ ବନିତା
ହୋଇଣ ଉଚ୍ଛିଷ୍ଟ ଅଙ୍ଗ ପ୍ରଭୁରେ ଦେଇ,
ଆଜ୍ଞା ଦେଲେ ଶ୍ରୀମୁଖେ ଯାହା,
ରାଧା ଠାକୁରାଣୀ ତାଙ୍କ ଅର୍ଦ୍ଧାଙ୍ଗ ପ୍ରିୟା । ୪ ।
ଚନ୍ଦ୍ରସେଣା ନାମେ ମୂର୍ଖ ଅଛୁ ଏକ ଗଉଡ଼େକ
ସେହୁ ପଗ୍ର ସେ କନ୍ୟାକୁ ବଶ ହୋଇଛୁ,
ଦେଖିବାର ଜଳଯାଉ ଭଣ୍ଡି ଭଲ ଜଣେ କହୁ
ମାତୁଳଙ୍କ ବନିତାକୁ ଭଗ୍ନୀକ ଗଛୁ,
ମୁଖ ତାଙ୍କ ଝକ ଦର୍ପଣ,
ଏହାଙ୍କର ମୁଖ ତହିଁ ଦଶେ ଚକ୍କଣ । ୫ ।

*—୧;—ଅଛୁ ତହିଁ ଅନ୍ତରେକ (ଛ); *—୪, ଭଗ୍ନୀକା (ଛ) ଭଣ୍ଡୋ (କ, ଖ, ଚ); *—୬:—ଚିକ୍କଣ (କ) ।

ମୃତ୍ତିକା ମୁକୁରେ କାନ୍ତି ଗୃହିଲେ ମୁଖ ଦଶଇ
ପିତଳ ଚନ୍ଦ୍ରକା କାନ୍ତି ଚୁମ୍ବେ ଚକୋର,
ତେତେକେ ପ୍ରାପ୍ତେ ଆମ୍ଭ ମୁଖ ଗୃହିଲେ କି ଯିବ ଦୁଃଖ,
ଅଧିକ ହୋଇବ ଦୁଃଖ ଚନ୍ଦ୍ରା ଅଙ୍କୁର,
ଗୋପୀ ତାଙ୍କ ପଦ୍ମିନୀ ବନ,
ସେ ସୂର୍ଯ୍ୟ ନାଥଙ୍କି ଭୃଙ୍ଗ ଯେସନେ ପାନ । ୬ ।
କେବଣ ବେଶ୍ୱର ସଖୀ କେ କେ ମାନେ ଅଛ ଦେଖି
ଏକ ଏକ ଯୁବତୀକ ଦୁଦୁଇ ଭୁଆ,
ନ ଜାଣିଲୁ ପ୍ରାପ୍ତେ ହୋଇ କେତେହେଁ ପଦ୍ମର ତହିଁ
ସ୍ୱାଦ ମଣିଛ ସତୀ ପତଙ୍କ କଥା,
ଯାହା ମନ ଯହିଁରେ ରତ,
କୋଟି ସ୍ୱର୍ଗଭୋଗ ତାକୁ କଣ୍ଟକ ମତ । ୭ ।
ଯେବଣ ବ୍ୟାଧିକ ଯହିଁ ଔଷଧ ହୋଇଛ ପିଇଁ
ସୁସ୍ଥ ହୋଇ ତାକୁ ତାହା ପିଲେଗ କଲେ,
ଅପ୍ରିୟ ଔଷଧ ଯେବ ପିଲେଗ କଲେ ଅବଧି
ଅଧିକେ ବଢ଼ଇ ବ୍ୟାଧି ଜାଣ ତ ଭଲେ,
ଗୋପୀ ତାଙ୍କ ବ୍ୟାଧି ସୁପଥି,
ଆମ୍ଭେ ତାଙ୍କ ବ୍ୟାଧିକ ନିଷେଧ କୁପଥି । ୮ ।
ସହକେ ଅଇଲେ ଭଣ୍ଡି ଆସିବୁଁ ବୋଲି ବାହୁଡ଼ି
କଂସ ମାରି ଗୋପକୁ ଲେଉଟି ନ ଗଲେ,
ଦ୍ୱାରକା ବିଜଏ ଜାଣି ଅମ୍ଭ ବିରମାନ ଶୁଣି
ମନ୍ତ୍ରୀ ମନ୍ତ୍ର ମହୌଷଧି ଉପାଏ କଲେ,
ଧନ୍ୟ ରେ ସେ ଗୋପତରୁଣୀ,
ଏତେ ସନ୍ଧ କଲୁ ତାଙ୍କ ଉଚ୍ଛାଟ-ପାଣି । ୯ ।

---

୬—୬:—ଭୃଙ୍ଗ ଚୁମ୍ବେ ଯେସନ—ଛ ୮—୨:—ପ୍ରିସ୍ଲୋଗ (କ, ଘ, ଚ) ।

*

ଉଷାଙ୍କ ବଚନ ଶୁଣି    ହସିଲେ ଶାରଙ୍ଗପାଣି
ଧାଇଁ ପଡ଼ି କମ୍ବୁକଣ୍ଠୀ ବାଳୀକି ଧରି,
ହୃଦୟେ ଭିଡ଼ନ୍ତେ ଆଣି    ଜଡ଼ିଣ ଗଲେ ତରୁଣୀ
ବଦନ ଚୁମ୍ବନ୍ତେ ଧ୍ୟାନ ସହିଲେ ହାରି,
ଏହି ମତ ସରୁନ୍ତ ସୁଖ,
ଯୁବତୀକେ ଭୁଜଯୁଗ ମୂର୍ଚ୍ଛନେ ମୁଖ । ୧୦ ।
ବିସ୍ତାର ପଦ୍ମ ଆସନ    ବସାଇ ଦୀର୍ଘ ଜଘନ
ହୃଦୟ ବିସ୍ତାର କଲେ ଯେସନ୍ତେ ଗଗନ,
ସ୍ତିଂଶି ତାରାଗଣ ଧରି    ହୃଦୟେ ଗଗନେ ଭରି
ନବଢ଼ ପରିରମ୍ଭଣେ ତୋଷିଲେ ମନ,
ମୋହମାନ ହୋଇ ଯୁବତୀ,
ଅନ୍ୟେ ଅନ୍ୟେ ଶ୍ରୀହରି ବଦନ ଚୁମ୍ବନ୍ତି । ୧୧ ।
ବିସରିଲେ ସୁବଂଗ୍ୟାନେ    ଅଧର ଅମୃତ ପାନେ
ନୟନେ ନୟନ ଜଡ଼ି ବୁଡ଼ି ରହିଲେ,
ଶ୍ରୀହରି ଶ୍ରୀମୁଖ ସୁଖ    ସ୍ମରଣେ ହରିଲେ ଦୁଃଖ
ମାନ ତେଜି ବଚନ ସରସେ କହିଲେ,
ହରି ପରିରମ୍ଭଣ ପ୍ରୀତ,
ଦେବ ଚନ୍ତେ ପ୍ରିୟାଗଣ ରମଣ ମୂର୍ତ୍ତି । ୧୨ ।
ଇତି ଶ୍ରୀ ରହସ୍ୟମଞ୍ଜରୀ ସପ୍ତମ ଛାନ୍ଦେ,
ଦ୍ୱାରକା ଯୁବତୀ ପତି ଉଷାଙ୍କୁ ବନ୍ଦେ
ଅଷ୍ଟମ ଛାନ୍ଦ ବର୍ଣ୍ଣନେ କେବଣ କେବଣ ସମ୍ଭାଷ,
କହିବାକୁ ଆଜ୍ଞା ହେଉ କମଳା ବିଳାସ । ୭ ।

---

୧୦—୧:—ହଂସାଙ୍କୁ (ଗ, ଘ) ନାଗରମଣି-(ଛ) । ୧୦—୫:— ସରୁଣ (ଘ, ଗ). ସ କ୍ଷୁ (କ, ଖ) । ୧୨ ୧:—ବିସ୍ମରିଲେ (କ, ଖ), ପାଶୋରିଲେ (ଘ) ।

## ଅଷ୍ଟମ ଛାନ୍ଦ ।

*○*

ଟଳଘଣ୍ଟ ସ୍ୱରେଣ ଗୀୟତେ (ଚଳଘଣ୍ଟ ଚଉପଦୀ ବାଣୀରେ ଗାଇବ)

ବିଦର୍ଭ ଦେଶ ନୃପବରଜନମା,
ଦେବୀ ରୁକ୍ମିଣୀ ଗୁଣମଣି ରମା,
ଆଦର ଯେତେକ ବ୍ରଜଦୁଲାଲୀ,
ତୁମ୍ଭେ ଶୁଣିଲ 'ଗୋ' ଜାମ୍ବବତୀଙ୍କର ଗାଳି ସ୍ନେହ । ୧ ।
ଯେତେ ଗାଳି ଦେଲେ ସବୁ ପ୍ରମାଣ,
ବ୍ରହ୍ମା ବେଦକୁ ଜିଣି କୋଟି ଗୁଣ,
ଏମନ୍ତ ଗାଳି ଯେ ପାରଇ ଦେଇ,
ଆମ୍ଭେ ତାହାଙ୍କୁ 'ଗୋ' ମୁଖ ଚୁମ୍ବି ସୁଖ ପାଉଁ ସ୍ନେହ । ୨ ।
ଏମନ୍ତ ଗାଳି ଯାହାଠାରୁ ଶୁଣି,
ଗୋପୀମାନଙ୍କ ପ୍ରାଣେସ୍ତ ତାଙ୍କୁ ମଣି,
ଗୋପୀମାନେହେଁ ତାହାଙ୍କୁ ପ୍ରସନ୍ନ,
କୃପା କରଣ 'ଗୋ' ଯାଚ ଦ୍ୟନ୍ତ ବରଦାନ ସ୍ନେହ । ୩ ।
ତାହାଙ୍କ ପ୍ରଭୁ ରାଧାଠାକୁରାଣୀ,
ସେହୁ ପ୍ରସନ୍ନ ହୋନ୍ତ ଭାବ ଜାଣି,
ତାଙ୍କ କୃପାରୁ ସରେ ତାଙ୍କ ଦୁଃଖ,
ଦେବ ତେବେ ସେ "ଗୋ" ଲଭଇ ଆମ୍ଭର ସୁଖ ସ୍ନେହ । ୪ ।
କୃଷ୍ଣଯାମଳେ ଏହା କହୁଅଛୁ,
(କୃଷ୍ଣ ପ୍ରାଣେସ୍ତ ମଣି ରାଧା ମୃଗାକ୍ଷି,
ରାଧା ପ୍ରସାଦୁ ଲଭେ କୃଷ୍ଣଭାବ,
ସେହୁ ତୁମ୍ଭଙ୍କୁ 'ଗୋ' କହିଲୁ ପରମ ଲାଭ ସ୍ନେହ) ୫ ।

---

୨—୩:—ଜାଣଇ ଦେଇ (ଗ, ଘ, ଚ)

୫—୨:—ପ୍ରାଣମଣି (କ); ୫—୩:—ଲଭଇ କୃଷ୍ଣ ଭାବ (ଢ, ଗ) ।

ମହତ ମୁଖେ ନ ଆସଇ ମିଛ,
ମିଥ୍ୟା ହିଁ ତାଙ୍କର ସତ ପ୍ରତ୍ୟକ୍ଷ,
ଜାମ୍ବବତୀ ଯେତେ କହିଲେ କଥା,
କୋଟି ବ୍ରହ୍ମାଣ୍ଡେ 'ଗୋ' କେ କରି ପାରେ ଅନ୍ୟଥା ସ୍ୱେ । ୬ ।
ଯାହା କହିଲେ ଗୋପ କନ୍ୟା କୁଚ
ମନ୍ଦରଗିରି ପରିଯେକ ଉଚ୍ଚ,
କର ବିସ୍ତାର ଗିରିବର ଲାଗି,
ତାହା କହିବା 'ଗୋ' ଶୁଣ ସବ ପର୍ବଜ୍ଞାରୀ ସ୍ୱେ । ୭ ।
ଯେବଣ କାଳେ ଧୈଲୁ ଗିରିବର,
ଇନ୍ଦ୍ର ବଜ୍ରକୁ ଡରିଲା ମନ୍ଦର,
ତେଣୁ କରି କର ବିସ୍ତାର କଲୁ,
ମୂଠା ଭିତରେ 'ଗୋ' ଗିରି ଲୁଚ୍ଚଇ ରଖିଲୁ ସ୍ୱେ । ୮ ।
ଦ୍ୱାଦଶ ଯୋଜନ ଯେବଣ ଗିରି,
ଏହି ହସ୍ତପଦ୍ମ ମଧ୍ୟ ନ ପୂରି,
ସେ ହସ୍ତ ଗୋପୀଙ୍କ ଉଚ୍ଚ କୁଚରେ,
ଅର୍ଦ୍ଧମାତ୍ରକୁ 'ଗୋ' ନ ଅଣ୍ଟି ଯାଇ ବିସ୍ତାରେ ସ୍ୱେ । ୯ ।
ଗୋପୀଙ୍କ ଯୌବନ ଅଟେ ଯେମନ୍ତ,
ରାଧିକା ଯୌବନ ଏଥୁଁ ଯେମନ୍ତ,
ଗିରିବର ସ୍ଥିର କେତେ ମାତର,
କୋଟି ବ୍ରହ୍ମାଣ୍ଡେ 'ଗୋ' କେ କହୁଁ ତଥି ଗୃତର ସ୍ୱେ । ୧୦ ।
ଶତେ ଯୋଜନ ଉଚ୍ଚ ଯଦୁବନ,
ବିସ୍ତାର ହିଁ ଗୋ ଶତେ ଶତେ ଯୋଜନ,
ମର୍କତ ଲିଙ୍ଗ ହେମ ଗିରି ସ୍ଥିତ,
ଲିଙ୍ଗ ଉପର୍ଗେ 'ଗୋ' ବିଂଶ କୋଣ ବିଂଶ ପ୍ରତ ସ୍ୱେ । ୧୧ ।
ଏ ଯେ ବୋଇଲେ ସମୂହ ଆବୋର,
ମେଘ ଯାଏ ଉଚ୍ଚ ତାଙ୍କ କବରୀ,

ଏହି ପ୍ରକାରେ କର ପ୍ରତକଛ,
ଦୁଷ୍ଟାନ୍ତରକୁ 'ଗୋ' ନଇଲେ ଆମ୍ଭଙ୍କୁ ବାଛ ସ୍ୱେ । ୧୨ ।
ଶୁଣି ହସିଲେ ସକଳ ତରୁଣୀ,
କଥାରେ କେ ଅବା ପାରିବ ଜିଣି,
ଯାର ଇଙ୍ଗିତ କଉତୁକ କଥା,
ଶ୍ରୁତି ସ୍ମୃତି 'ଗୋ' କହି ତ ନୋହେ ଶକତା ସ୍ୱେ । ୧୩ ।
ବୋଲନ୍ତି ରୁକ୍ମଣୀ ଶୁଣ ଗୋସାଇଁ,
ଆହୁରି କଥା ସନ୍ଧ ଗଲା ରହି,
ରାଧା ଯେବେ ତୁମ୍ଭ ନିଜ ଯୁବତୀ,
ପ୍ରଭୁ ! କହିବା ହେ ଚନ୍ଦ୍ରସେଣା କମ୍ପା ପତି ସ୍ୱେ । ୧୪ ।
ଗୋପୀମାନେ ହେ ଛନ୍ତି ଭ୍ରାତା ଯେନ,
ତୁମ୍ଭ କାନ୍ତା କମ୍ପା ପରକାମିନୀ,
ଏଥିର ସନ୍ଧ ବୁଝାଇ କହିବା,
ପ୍ରଭୁ ଆମ୍ଭର 'ହେ' ହୃଦୟ ଦୁଃଖ ଦହିବା ସ୍ୱେ । ୧୫ ।
ପ୍ରଭୁ ବୋଲନ୍ତି ଶୁଣିମା ମୁଗାକ୍ଷୀ,
ଯେସନ ଗୁହ୍ୟ ସନ୍ଧ ତୁମ୍ଭେ ପୁଚ୍ଛି,
ନୃତ୍ୟରେ ଆମ୍ଭେ ଦଶଭୁଜ ବହି,
ବୃନ୍ଦାବନ ଗୋ ପାଠେଛନ୍ତି ଏହା କହି ସ୍ୱେ । ୧୬ ।
ଶଙ୍ଖ ଚକ୍ର ଗଦା ପଦ୍ମ ଏ ଚାରି,
ଧନୁ ଖଡ଼ଗ ବେନି ଭୁଜେ ଧରି
ଦ୍ୱିଭୁଜେ ବଂଶୀ ଭୁଜେ ଆଲିଙ୍ଗନ,
ଆର ଭୁଜକେ 'ଗୋ' ରାଧା ଚିବୁକ ଚୁମ୍ବନ ସ୍ୱେ । ୧୭ ।
ଏମନ୍ତ ଦଶଭୁଜ ନୃତ୍ୟସ୍ଥଳେ,
ଚୁମ୍ବନ ଲୀଳା ରସ କ୍ରୀଡ଼ା ବେଳେ,

---

୧୨—୧ :—ସମୁଦ୍ର ଆଭେଖ (ଚ) । ୧୪—୨ :—ସନ୍ଧକଥା (କ, ଖ) ।

ମଳୟାନିଳ କମ୍ବୁଗର୍ଭେ ପଶି,
ଦେବ ଶୁଣିମା 'ଗୋ' ଅଦ୍ଭୁତ ଧ୍ୱନି ପ୍ରକାଶି ସେ । ୧୮ ।
ରାଧାଙ୍କ ଚିତ୍ତ ଆମ୍ଭ ରସେ ଜଡ଼ି,
ଆମ୍ଭ ଚିତ୍ତ ହିଁ ଅଛୁ ତହିଁ ବୁଡ଼ି,
ଏମନ୍ତ ବେଳେ କମ୍ବୁରବ ଜାତ,
ଶୁଣି ଚଞ୍ଚଳ 'ଗୋ' ହୋଇଲା ରାଧାଙ୍କ ଚିତ୍ତ ସେ । ୧୯ ।
ତା ଦେଖି ଆମ୍ଭର ଜନ୍ମିଲା କୋପ,
ବୋଇଲୁ ଏବେ ତୁମ୍ଭେ ଘେନ ଶାପ,
ମୋ ରସ ତେଜିଲ ଯା ରସ ଘେନ,
ମର୍ତ୍ତ୍ୟେ ଜନମି 'ଗୋ' ବୋଲାଅ ତାର କାମିନୀ ସେ । ୨୦ ।
ଶୁଣି ରାଧିକା ମୂର୍ଚ୍ଛାଗତ ହୋଇ,
ବୋଇଲେ ପ୍ରଭୁ କର ତ୍ରାହି ତ୍ରାହି,
ଅଜାଗ ଅପ୍ରାଧକୁ ଏଡ଼େ ଶାସ୍ତି,
ତୁମ୍ଭ ବିହୁନେ 'ହେ' ଦୋସର କେ ମୋର ପଥି ସେ । ୨୧ ।
ତୁମ୍ଭ ଆମ୍ଭ ସଙ୍ଗ ସଂଯୋଗ ଜାଣି,
ବ୍ରହ୍ମା କୋଟି ଗଲେ ପଲକେ ମଣି,
ଏବେ ପଲକ ହେବ କଳ୍ପ ସରି,
ପ୍ରଭୁ ଶୁଣିମା 'ହେ' କେସନେ ଜୀବନ ଧରି ସେ ।୨୨ ।
ତୁମ୍ଭଙ୍କୁ ତେଜି ମୁଁ ଯିବି କେମନ୍ତେ,
ତୁମ୍ଭେହେଁ କି ମୂ ଛାଡ଼ି ପାରିବ ମୋତେ,
କି ବିଘ୍ନର କଲ ଏସନ ସୃଷ୍ଟି,
'ପ୍ରଭୁ' ଶୁଣିମା 'ହେ' ଏବେ ବୋଲାଇବ କାହା ପତି । ୨୩ ।
ତାହାଙ୍କର ହୋଧ ଆମ୍ଭଙ୍କୁ ବିରୋଧ,
ବିବିଧ ପ୍ରକାରେ କହିଲୁ ବୋଧ,
ବୋଇଲୁ ଏଥକୁ ନ ଚିନ୍ତ ଆନ,
ବୁଧ ବଦନ୍ତି 'ଗୋ' ଯହିଁ ରାଧା ତହିଁ କାନ ସେ । ୨୪ ।

ତୁମ୍ଭେ ମୋ ଶ୍ରବଣ ତୁମ୍ଭେ ମୋ ନାସା,
ତୁମ୍ଭେ ମୋହୋର ଜୀବନ ଭରସା,
ତୁମ୍ଭେ ମୋ ମୁଖ ଉଚ୍ଚ ସର୍ବ ଶକ୍ତି,
ତୁମ୍ଭ ବହୁନେ 'ଗୋ' ଜଉଁ ଆନେ ମୋର ତଥି ସ୍ନେ । ୨୫ ।
ତୁମ୍ଭେ ଗଲେ କ ଆମ୍ଭେ ଥିବୁଁ ରହି,
ଆମ୍ଭେ ଗଲେହେଁ ନିତ୍ୟସ୍ଥଳ ନାହିଁ,
ଏ ଅଳ ଅଂଶ ଆଗ ହୋଇ ଯାହ,
ଗୋପ ଯମୁନା 'ଗୋ' ନୀପବନ ହୋଇଆଛ ସ୍ନେ । ୨୬ ।
ଗୋପୀ ଗୋପାଳ ଅଂଶ ଆଗ ଯାଇ,
ବୃନ୍ଦାବନେ ସ୍ନେହେ ଥିବେ ରହି,
ଏ କମ୍ଭୁ ଜାତ ଚନ୍ଦ୍ରସେଣା ନାମ,
ଚନ୍ଦ୍ର ଜ୍ୟୋତନ୍ତୁ 'ଗୋ' ଅଧିକ କଲା ଉପାମ ସ୍ନେ । ୨୭ ।
ସେହି ତ ଆମ୍ଭ ଅଂଶ ଅନୁରାଗୀ,
ଆମ୍ଭର ସୁଖ ତାହିଁ ଅଛୁ ଲଗି,
କେବଳ ତୁମ୍ଭ ଭ୍ରୁଥା ହୋଇଥିବ,
ଅଙ୍ଗ ଛୁଇଁ ତ 'ଗୋ' କେବେହେଁ ବୁଝି ନ ଯିବ ସ୍ନେ । ୨୮ ।
ଗୋପୀଙ୍କ ଭ୍ରୁଥା ହୋଇବେ ଯେତେକ,
ସେହି ତ ଆମ୍ଭ ଅଂଶ ବୋଲି ଲେଖ,
ସମସ୍ତେ ହୋଇବେ ନଷ୍ଟ ସ୍ୱରୂପ,
ତୁମ୍ଭ ଆମ୍ଭର 'ଗୋ' ଚଳିଯାଉ ଏବେ ଅଂଶ ସ୍ନେ । ୨୯ ।
ପ୍ରଭୁଙ୍କ ଶ୍ରୀମୁଖୁଁ ଏସନ ବାଣୀ,
ଶୁଣି ସନ୍ତୋଷ କୃଷ୍ଣପାଟରାଣୀ,
ଉଠି ଘୁଞ୍ଚି ଗଡ଼ିଗଲି ଶୁଣିଲେ,
ହୃଦ ଉଲ୍ଲସି 'ହେ' ଆନନ୍ଦଜଳ ବହିଲେ ସ୍ନେ । ୩୦ ।
ଉଠି ସମସ୍ତେ ସଲଜ୍ଜିତ ହୋଇ,
ପୁଣି କଣାଉ ଶିରେ କର ଦେଇ,

ଅବଧାନ ପ୍ରଭୁ ଦେବୀ ଧରୀତସ୍ୱ,
ଆମ୍ଭ ସବୁର 'ହେ' ମାଗୁଣି ଅଛୁ କଥାଏ ସ୍ୱେ । ୬୧ ।
କେମନ୍ତ ମୂର୍ତ୍ତି ରାଧା ଠାକୁରାଣୀ,
କେମନ୍ତ ସୁନ୍ଦର ଗୋପତରୁଣୀ,
ବାରେକ ଯେବେ ଦର୍ଶନ କରନ୍ତୁ,
ପ୍ରଭୁ ତେବେ ସେ 'ହେ' ମନର ବାଧା ହରନ୍ତୁ ସ୍ୱେ । ୬୨ ।
ପ୍ରଭୁ ବୋଲନ୍ତି ଏବେ ତୁମ୍ଭେ ଯାଅ,
ଅଳପ ଦିନ ଥିର ହୋଇଥାଅ,
ଉପାଏ ପ୍ରକାରେ ପାରିବା ଯେବେ,
ନିଷ୍ଟେ ଦର୍ଶନ 'ଗୋ' କରାଇବା ନେଇ ତେବେ ସ୍ୱେ । ୬୩ ।
ଏମନ୍ତେ ମେଲାଣି ପାଇ ସୁନ୍ଦରୀ,
ପ୍ରବେଶ ହୋଇଲେ ଯେ ଯାହା ପୁରୀ,
ଯେ ଯାହା ବିଧି ବିଧାନେ ରହିଲେ,
ମନୁ ନ ଯାଇ 'ହେ' ଶ୍ରୀହରି ଯାହା କହିଲେ ସ୍ୱେ । ୬୪ ।
ଶୁଣ ସାଧୁଜନ ଅପୂର୍ବ ରସ,
ମନେ ନ ଧରିବ କବିଙ୍କ ଦୋଷ,
କବିଙ୍କ ଆସ୍ୱଭ ନୋହେ ଏମାନ,
ତେତେବେଳେ ତ ହେ ବୁଡ଼ିଥାଇ ନିଜ ଗ୍ୟାନ ସ୍ୱେ । ୬୫ ।
କବିତ୍ୱ ଅଂଶ ସରସ୍ୱତୀ ବୀଣା,
କବିତ୍ୱ ଚିତ୍ତ ଅଟେ ଚନ୍ଦ୍ର ଗୁଣା,
କର ଚଳିଲେ ଚଳେ ଗୁଣବାଣୀ,
କର ନ ହେଲେ 'ହେ' କାହୁଁ ଶବଦ ବଖାଣି ସ୍ୱେ । ୬୬ ।
କବିତ୍ୱ ଯେତେ ସରସ୍ୱତୀ ସୁତ,
ଯାହାକୁ ଯାହା ବାଣ୍ଟି ଦ୍ୟନ୍ତି ମାତ,
ଆର୍ଯ୍ୟା ପ୍ରମାଣେ ବାନ୍ଧେ ଗ୍ରନ୍ଥସାର,
ଆର୍ଯ୍ୟା ବିନୁ କ ହେ' ମାନବ ଶକ୍ତି ସଙ୍ଗର ସ୍ୱେ । ୬୭ ।

ବସ୍ତି ଯାମଳେ ବ୍ରହ୍ମା ନାରଦଙ୍କୁ,
କବିତ୍ୱ ସୁଖ କହିଲେ ତାହାଙ୍କୁ,
ବୋଇଲେ କବି ହୃଦେ ଆନ୍ତ ହରି,
କବି ହୃଦରେ 'ହେ' ସରସ୍ୱତୀ ବିଜେ କରି ସେ । ୩୮ ।
ଏକ ପଦେ ଏକ ଶ୍ଲୋକକେ ଗୀତ,
କୃଷ୍ଣ ଅର୍ଥେ ଯେବେ କରେ କବିତ୍ୱ
ସର୍ବଦା ତାର ବୃଦ୍ଧି ସିଦ୍ଧି ହୋଇ,
କୃଷ୍ଣ ଅଙ୍ଗେଣ 'ହେ' କାଳେଣ ଆତ୍ମା ଗଛଇ ସେ । ୩୯ ।
କବିତ୍ୱ ଗୀତ ସର୍ବ ଲୋକେ ଗାଇ,
କବିତ୍ୱ ଗ୍ରନ୍ଥ ଶୁଣି ସୁଖୀ ହୋଇ,
କବିତ୍ୱ ଗଣ୍ଠି ବାନ୍ଧିଥାଇ ଯାହା,
ମୂର୍ଖ ପଣ୍ଡିତ 'ହେ' ନ ବୁଝି ନିନ୍ଦନ୍ତି ତାହା ସେ । ୪୦ ।
ପଣ୍ଡିତ ହୋଇ ମୂର୍ଖ ବୁଦ୍ଧି ଯାର,
ବିଗୁର ନାହିଁ ଜ୍ଞାନ ବୃଦ୍ଧି ତାର,
ଗୁଣ ପକାଇ ଧରି ପାରେ ଦୋଷ,
ରସ ଅମୃତ 'ହେ' ତେଜିଣ ଭକ୍ଷଇ ବିଷ ସେ । ୪୧ ।
ତେଣୁ ବୋଲଇ ସନ୍ଥଜନେ ବଡ଼,
ସନ୍ଥର ବିନୁ ଯେତେ ସବୁ ଘଡ଼,
ସନ୍ଥର ପାଦରଜ ମୋର ଶିରେ,
ଦେବ ମାଗଇ 'ହେ' ପଡ଼ିଥିବ ନିରନ୍ତରେ ସେ । ୪୨ ।
ଇତି ଶ୍ରୀ ରହସ୍ୟମଞ୍ଜରୀ ଅଷ୍ଟମ ଛାନ୍ଦେ
ଶ୍ରୀରାଧା ପରମ-ଗୁପତ-ତତ୍ତ୍ୱ ବନ୍ଦେ,
ନବମ ଛାନ୍ଦ ବର୍ଣ୍ଣିନେ କେବଣ କେବଣ ବିନୋଦ,
କହିବାକୁ ଆଜ୍ଞା ହେଉ ଏଥର ଯେ ପରବୋଧ । ୮ ।



*

# ନବମ ଛାନ୍ଦ ।

—ঃ()ঃ—

ରାଗ—ବଙ୍ଗଳାଶ୍ରୀ । (ମାଧୋଇବାଣୀରେ ଗାଇବ)

ଏଥୁ ଆନ କଥା ଗୋପର ବେବସ୍ଥା
ଶୁଣିମା ସୁବୁଦ୍ଧି ଜନ,
କୃଷ୍ଣ ଗଲୁ ଦନୁ ସମସ୍ତେ ନାରୀଙ୍କୀ
କାହୁଁ ନ ସରଇ ଦନ । ସୁଜନ ହେ । ୧ ।

ରାଧିକା ଦୂତିକା ସବ ସଖୀ ଘେନି
ଭାଳନ୍ତ ଏକାନ୍ତେ ବସି,
କାହାର କି ବୁଦ୍ଧି ଉପାଏ ପ୍ରସିଦ୍ଧି
ଥିଲେ କହ ମୋତେ ଆସି । ନା ଗୋ ସେ । ୨ ।

ଆମ୍ଭ ପ୍ରତି ଆଶା ଛାଡ଼ିଲେ ମୁରାରି
ପଡ଼ିଲେ ଚତୁରା ଫାନ୍ଦେ,
ଆଉ କାହା ଆଗେ ପ୍ରାଣ ରଖିଥିବା
ଏହା କହି ରାଧା କାନ୍ଦେ । ନା ଗୋ ସେ । ୩ ।

ବୋଲନ୍ତି ଦୂତିକା ଶୁଣ ଠାକୁରାଣୀ
ବୁଦ୍ଧିଏ ପାଞ୍ଚିବ ମୁହିଁ,
ତେବେ ଯେବେ କାର୍ଯ୍ୟ ସିଦ୍ଧ ନୋହବଟି
ଅଗ୍ନିରେ ପଡ଼ିବା ତେହିଁ । ନା ଗୋ ସେ । ୪ ।

କନ୍ୟାସ୍ୱେ କନ୍ୟାସ୍ୱେ ଅଙ୍ଗ ଜାତ କରି
ପେଷିବା ତାଙ୍କୁ ଦ୍ୱାରକା,
ଉପାୟ କରି ସେ କଢ଼ାଇ ଆଣିବେ
ମାୟାବୀ ଦଶ ନାଏକା । ନା ଗୋ ସେ । ୫ ।

ଏମନ୍ତ ବୋଲି କର୍ପୂର ଅଙ୍ଗ ତୋଳି
ଦଳ ଗଢ଼ିଲେ ପିରୁଳା,

ଆଗେ ହସ୍ତ କରି ଜୀବନ୍ୟାସ କଲେ
ଚନ୍ଦ୍ର ଆପ ଆତ୍ମକଳା । ନା ଗୋ ସ୍ବେ । ୬ ।
ପ୍ରଥମେଣ କୃଷ୍ଣ ବୀଜ ଉଚ୍ଚାରିଲେ
ସ୍ୱନାମ ଚତୁର୍ଥ ଭରି,
ଛାୟା ମାୟା ମେଲ୍ ମନ୍ତ୍ର ଅଷ୍ଟାକ୍ଷର
ପଢ଼ିଲେ ପୁଷ୍ପେକ ଧରି । ନା ଗୋ ସ୍ବେ । ୭ ।
ବାମ ନାସା ଦ୍ୱାରେ ଜନ୍ମିଣ କୁମାରୀ
ପୁଷ୍ପେ ବଳେ କଲ ଆସି,
ସେ ପୁଷ୍ପପିତୁଳା ହୃଦପଦ୍ମେ ଭରି
ପୂଜା କଲେ ରୂପରାଶି । ନା ଗୋ ସ୍ବେ । ୮ ।
ଋଷି ସ୍ୱନାମ ବନ୍ଧନ ଲକ୍ଷ୍ମୀ ଦେଇ
କୈରବ ଧରି ରାଧିକା,
ସେହି ପ୍ରକାରେ କନ୍ୟାଏ ଜାତ କଲେ
ସକଳ ଗୁଣେ ଅଧିକା । ନା ଗୋ ସ୍ବେ । ୯ ।
ଏହି ଅନୁରୂପେ ଆଉ ଅଷ୍ଟସଖୀ
ଜାତ କଲେ ଅଷ୍ଟନାରୀ
ସେ ବଧି ଆବୃରେ ପଞ୍ଚ ଉପସ୍ଥରେ
ପୂଜିଲେ ମନ୍ତ୍ର-କୁମାରୀ । ନା ଗୋ ସ୍ବେ । ୧୦ ।
ଗନ୍ଧ ଚନ୍ଦନ କର୍ପୂର ମୃଗମଦ
କୁଙ୍କୁମାଦ ଦେହେ ବନ୍ଧ,
ବବଧ ଗନ୍ଧେ ଦଶଦିଗ ଆମୋଦ
ରୂପେ କାମକାନ୍ତା ମୋହ । ନା ଗୋ ସ୍ବେ ୧୧ ।
ପିଣ୍ଡେ ପ୍ରାଣ ପାଇ ମୂର୍ତ୍ତିବନ୍ତ ହୋଇ
କହେ କରପତ୍ର ଯୋଡ଼ି,
ମୁଖ ତୋଳ ଆଜ୍ଞା ହୋଇ ଠାକୁରାଣୀ
କି କାର୍ଯ୍ୟେ ଆମ୍ଭଙ୍କୁ ଲୋଡ଼ି । ନା ଗୋ ସ୍ବେ । ୧୨ ।

ବୋଲନ୍ତି ରାଧା ଶୁଣ ମନ୍ଦକୁମାରୀ
ଚଳ ଗୋ ତୁମ୍ଭେ ଦ୍ୱାରକା,
ପ୍ରଭୁ ଆଗେ ଆମ୍ଭ ଅବସ୍ଥା କହିବା
ଗାୟେଣୀ-ଗଣେ ନାୟିକା । ନା ଗୋ ସ୍ୱେ । ୧୩ ।
ଆଜ୍ଞା ପ୍ରମାଣେ ଚଳିଲେ ମାୟାନାରୀ
ବଚିତ୍ର ବେଶ ବନାଇ,
ଅନ୍ତିଛଗଡ ଦ୍ୱାରିବତୀ ମିଳିଲେ
ପ୍ରଭୁଙ୍କ ସମ୍ମୁଖରେ ଯାଇଁ । ନା ଗୋ ସ୍ୱେ । ୧୪ ।
ଦେଖିଣ ଶ୍ରୀପତି ହଲସିଲ ମତି
ଗାୟେଣୀଙ୍କ ରୂପ ଚାହିଁ,
ଏ ତ ମୋତେ ଗୋପୀ ପ୍ରାୟେକ ଦିଶନ୍ତି
କାହୁଁ ଅଇଲେ ଚଳାଇ । ନା ଗୋ ସ୍ୱେ । ୧୫ ।
ରୁକ୍ମଣୀଙ୍କି ଚାହିଁ ଠାରିଲେ ଗୋସାଇଁ
ଗାୟେଣୀଙ୍କି ରାଇ ପୃଚ୍ଛ,
ଶୁଣି ରୁକ୍ମଣୀ ବିକାର ପଚାରନ୍ତି
(ଆଗୋ) ତୁମ୍ଭେ କାହୁଁ ଆସିଅଛ । ନା ଗୋ ସ୍ୱେ । ୧୬ ।
ନାମ ତୁମ୍ଭ କସ କି କାର୍ଯ୍ୟେ ଆସିଛ
କି କି ଗୁଣ ତୁମ୍ଭେ ବହ,
ଶୁଣି ଗାୟେଣୀ ଅଳ୍ପ ହୋଇ ହସନ୍ତେ
ଲଗିଲା ସତୃନ୍ତ ମୋହ । ନା ଗୋ ସ୍ୱେ । ୧୭ ।
ଶୁଣ ପାଟରାଣୀ ମୋ ନାମ ଅଙ୍କିନୀ
ମାତା ମୋ ରାଧା ଗାୟେଣୀ,
ଦୂତୀ ଗାୟେଣୀ— ଦୁହିତା ସହଚରୀ
ଏ ମୋର ସାନ ଭୟେଣୀ । ନା ଗୋ ସ୍ୱେ । ୧୮ ।

---

୧୪—୩:—ଅନ୍ତର୍ଷ୍ୟ (ଗ) ଅନ୍ତିକ୍ଷ (ଖ) ।
୧୮—୪—ସାନ ବହେଣୀ (ଚ), ଭଉଣୀ (ଘ) ।

ଆଉ ସାନ ମା ଚନ୍ଦ୍ରାବଳୀ ଗାୟେତ୍ରୀ
ଦ୍ୱିତୀ ନାମ ଚନ୍ଦ୍ରମାଳା,
ତା ତହୁଁ ସାନ ଗାୟେତ୍ରୀ ଚନ୍ଦ୍ରରେଖା
ନନ୍ଦନୀ ତା ଚନ୍ଦ୍ରଶାଳା । ନା ଗୋ ସ୍ୱେ । ୧୯ ।
ଆଉ ସପତ୍ନୀ ଚନ୍ଦ୍ରାବଳୀ ନାମ
ଦ୍ୱିତୀ ନାମ ଚନ୍ଦ୍ରବମ୍ବା,
ମଦନା ସୁନ୍ଦରୀ ଦୁହିତା ମଦନା
ମଦନେ ଉନ୍ମତ୍ତପ୍ରଭା । ନା ଗୋ ସ୍ୱେ । ୨୦ ।
ଶ୍ରୀସ୍ୱା ଗାୟେତ୍ରୀ ନନ୍ଦନୀ ଏ ଶ୍ରୀମତୀ
ମଧୁମତୀ ଦ୍ୱିତୀ ମେଧା,
ଶଶୀରେଖା ତହୁଁ ଶଶୀପ୍ରଭା ଜାତ
ହରପ୍ରିୟାରୁ ହରଦ୍ରା । ସେ ଗୋ ସ୍ୱେ । ୨୦ ।
ଆମ୍ଭ ପିତାଙ୍କର ଏ ଦଶ ଉତ୍ତରେ
ଅଛନ୍ତି ବହୁ ବନିତା,
ମୋର ଜନନୀଙ୍କି ଠାକୁରାଣୀ-ପଣେ
ସେବନ୍ତି ସବ ସାବତା । ନା ଗୋ ସ୍ୱେ । ୨୨ ।
(ତୁମ୍ଭେ ଯେମନ୍ତେ ସବରାଣୀ ଉପରେ
ଠାକୁରାଣୀ-ପଣେ ଶ୍ରେଷ୍ଠ,
ଆମ୍ଭ ମାତା ସବ— ସାବତା ଉପରେ
ମୂର୍ଦ୍ଧନ-ମଣିମୁକୁଟ । ନା ଗୋ ସ୍ୱେ । ୨୩ । )
ସହଚରୀ ମାତା ଦୂତକା ଗାୟେତ୍ରୀ
ମୋର ଜନନୀର ସଖୀ,
ଏ ଅଷ୍ଟ କୁମାରୀଙ୍କ ମାତା ଉପରେ
ଆଉ ଅଷ୍ଟ ଶ୍ରେଷ୍ଠ ଲେଖି । ନା ଗୋ ସ୍ୱେ । ୨୪ ।

---

୧୯—୪ :—ଚନ୍ଦ୍ରକଳା (ଗ) ।
୨୨—୪ :—ସେବନ୍ତି ସେ ସବମାତା (କ, ଖ, ଗ) ।

ଏ ଦୁଇ ଅଷ୍ଟ ଅଧିଷ୍ଠାତ୍ରୀ ଗୋପୀଙ୍କୁ
ଜଣକେ ସହସ୍ରେ ପ୍ରତି,
ଏମନ୍ତେ ଷୋଳ- ସହସ୍ର ଅନୁଗୋପୀଙ୍କୁ
ଷୋଳଦ୍ୱାମୂଳେ ଗାବନ୍ତି । ନା ଗୋ ସ୍ୱେ । ୨୫ ।
ଏହି ପ୍ରକାରେ ଯୂଥ ଯୂଥ ଗୋପୀଙ୍କୁ
କହିବେ ସରିବ ନାହିଁ,
ଏହାଙ୍କ ପ୍ରସନ୍ନେ ସିଦ୍ଧ ସରସ୍ୱତୀ
ବିଷ୍ଣୁଙ୍କୁ ପାଇଲେ ମୋକ୍ଷ । ନା ଗୋ ସ୍ୱେ । ୨୬ ।
ତାଙ୍କୁ ସେବା କରି ସ୍ୱର୍ଗ ବିଦ୍ୟାଧରୀ
ଶିଖିଲେ ଗାନ୍ଧାର ବିଦ୍ୟା,
ନୃତ୍ୟ ଗୀତ ରସେ ଇନ୍ଦ୍ରଙ୍କୁ ମୋହିଲେ
ବଢ଼ାଇଲେ ସ୍ୱର୍ଗେ ଶ୍ରଦ୍ଧା । ନା ଗୋ ସ୍ୱେ । ୨୭ ।
ରୁକ୍ମଣୀ ବୋଇଲେ ସବୁ କହିଲ ନି
ରଖିଲ ଦୁଇଟି କଥା,
ସ୍ଥାନ ନାମ ପିତା ନାମ ଗୋପ୍ୟ କଲ
ଏ ତୁମ୍ଭ କଉଁ ବେବସ୍ଥା । ନା ଗୋ ସ୍ୱେ । ୨୮ ।
ବୋଲନ୍ତି କୁମାରୀ ଶୁଣ ମହାଦେଈ
ଯାହା ପଚ୍ଛରିଲ ତୁମ୍ଭେ,
ପିତାଙ୍କ ଛାଡ଼ି ପଳା- ଇଲୁ ବେଳକୁ
ମାତା ଗର୍ଭେ ଥିଲୁ ଆମ୍ଭେ । ନା ଗୋ ସ୍ୱେ । ୨୯ ।
ଥାଏ କରି ନାମ ପଚ୍ଚରି ନ ପାରୁ
ମାସ୍ୱେ ନ କହନ୍ତି ଯାଚି
ଥାନ-ବୃତ୍ତାନ୍ତ ତୁମ୍ଭେ ଯାହା ପୁଚ୍ଛିଲ
ଆମ୍ଭର କି ଥାଏ ଅଛି । ନା ଗୋ ସ୍ୱେ । ୩୦ ।

---

୨୫—୧ :—ଅଧିଷ୍ଠାତ୍ରୀ [ଘ, ଚ] ।

ଯମୁନା ତଟେ ବୃନ୍ଦାବନ ନିକଟେ
ଗୋପ ବୋଲି ପାଟଣା ସ୍ୱେ,
ସେ ସ୍ଥାନେ ପକାଇ ପିଣ୍ଡା ପଲାଇଲେ
ଦାରୁଣ ଏଡ଼େ ନିର୍ଦ୍ଦ୍ୱେ । ନା ଗୋ ସ୍ୱେ । ୩୧ ।
ମାତାମାନେ ତାଙ୍କ ଝୁରି ଝୁରି କ୍ଷୀଣ
ନ ପାରନ୍ତି ଗାଇ ବାଇ,
ଧର୍ମ କରି ଗୋପେ ଗୋଆଳେ ପୋଷନ୍ତି
ମନରେ ସୁହୃଦେ ନାହିଁ । ନା ଗୋ ସ୍ୱେ । ୩୨ ।
ଡମ୍ବରୁ ଦାନପଣେ ଡାକ ବାଜଇ
ଶୁଣି ପେଷି ଦେଲେ ମାସ୍ୱେ,
ଆମ୍ଭ ନୃତ୍ୟ ଗୀତ ଦେଖି ଦାନ ଦେବ
କଣାଅ ରାଜାଙ୍କ ଠାସ୍ୱେ । ନା ଗୋ ସ୍ୱେ । ୩୩ ।
ଶୁଣି ରୁକ୍ମିଣୀ ସବ ସଖୀମାନଙ୍କୁ
ବୁଦ୍ଧି ପ୍ରତ୍ମୀଭୂତ ହୋଇ,
ପ୍ରଭୁ ବୋଇଲେ ଲେ କି କି ନୃତ୍ୟ ଗୀତ—
ବିଦ୍ୟାରେ କୁଶଳ ତୁହ୍ମ । ନା ଗୋ ସ୍ୱେ । ୩୪ ।
ଗାସ୍ୱେଣୀ ବୋଇଲେ ଶୁଣ ମହାରାଜା
ସବୁ ନୃତ୍ୟ ଆମ୍ଭେ ଜାଣୁ,
କନାଇ ରାଧିକା ନୃତ୍ୟ ଗୀତ ବଳୁ
ଆବର ନାଟ କି ମଣୁ । ରାଜନ ହେ । ୩୫ ।
ସ୍ୱେତେ ବୋଲି ପଦ୍ମ- ପ୍ରବନ୍ଧେ କୁମାରୀ
ରଚିଲେ ବିବିଧ ବେଶ,
ଅର୍ଦ୍ଧାଙ୍ଗିନୀ କି ରାଧା ରୂପେ ସଜ କରି
ଆରମ୍ଭିଲେ ନୃତ୍ୟ ରସ । ନା ଗୋ ସ୍ୱେ । ୩୬ ।

---

୩୧—୩ ?—ଗୁଡ଼ଣ ପିଣ୍ଡା (କ, ଖ) । ୩୬—୧—ଏତେବୋଲି ରଙ୍ଗ ପ୍ରବନ୍ଧେ କୁମାରୀ—ଘ; ଗୃହ ପ୍ରବନ୍ଧେ—ଛ ॥

ତାଳ ମର୍ଦ୍ଦଳ ରବାବ ଯନ୍ତ୍ର ବଜାଇ
ଗାଇଲେ ସୁସ୍ୱରେ ଗୀତ,
ଗୀତ ଶୁଣାଇ ଜଗନ୍ନାଥେ ବୋଇଲେ
କୋଉଟି ପ୍ରବନ୍ଧ ନୃତ୍ୟ । ନା ଗୋ ସ୍ୱେ । ୩୭ ।
ରାଧିକା ରଖି କହ୍ନାଇ ନ ରଖିଲେ
ଏ କଅଣ ନୃତ୍ୟର ସୁଖ,
ଗାୟେଣୀ ବୋଇଲେ କହ୍ନାଇ ରାଧିକା
ସହନ୍ତେ ବିଚ୍ଛେଦଦୁଃଖ । ସଜନ ହେ । ୩୮ ।
ପୂର୍ବେ ଯେ ନୃତ୍ୟ— ପ୍ରବନ୍ଧମାନ ଥିଲା
ଏବେ ସେ ସୁଖ କାହିଁଛୁ,
ଆମ୍ଭ ପିତାମାତା ପ୍ରାୟେକ ହୋଇଣ
ତାଙ୍କ ବିଚ୍ଛେଦ ହୋଇଛୁ । ସଜନ ହେ । ୩୯ ।
ଏତେଣୁ କେବଳ ପୂର୍ବ ସୁଖ ସୁମରି
ପ୍ରଥମେ ରଖିଲୁ ଏହା,
କହ୍ନାଇ ରାଧିକା ବିଚ୍ଛେଦ ପ୍ରବନ୍ଧ
ଏଣିକି ରଖିବୁଁ ତାହା । ସଜନ ହେ । ୪୦ ।
ହଉ ଦେଖିବା ବୋଲି ପ୍ରଭୁ ବୋଇଲେ
ଅର୍ଦ୍ଧନୀ ରଖିଲା ନୃତ୍ୟ,
ଚରୁକେ ତର୍ଜନୀ କଟି କରେ ଦେଇ
ଭ୍ରମିଲା ଚକ୍ର ଯେମନ୍ତ । ନା ଗୋ ସ୍ୱେ । ୪୧ ।
ବିଚିତ୍ର ଗଢ ଅଙ୍ଗ— ଚଢ ମାଣଣ
ଗଗନେ ପଶିଲା ଯାଇଁ,
ବିଜୁଳି ବେଗେ ଆକାଶୁଁ ଖସି ଆସି
ପାଦ ଝମକାଇଲା ଭୂଇଁ । ନା ଗୋ ସ୍ୱେ । ୪୨ ।

---

୪୨—୩ :—ଚଦୁଡ (ଚ), ବିଜୁଳୀ (ଗ) ।

ଗାବନ୍ତି ବାବନ୍ତି ପଢ଼ନ୍ତି ଜଢ଼ନ୍ତି
ନାଚନ୍ତି କାଛନ୍ତି ଛଟା,
ସକଳ ବୋଇଲେ ଏତେବେଳେ ସଖି
ବିଚ୍ଛେଦ ପ୍ରବନ୍ଧ ଭେଟା । ନା ଗୋ ସ୍ୱେ । ୪୩ ।

ଗାଇଲେ ଗାୟେଣୀ ବିଚିତ୍ର କାହାଣୀ
ଗୋପପୁର କଥାମାନ,
କୃଷ୍ଣ ଗଲ ଦିନୁଁ ସମସ୍ତେ କାମିଣୀ
ଖାଦ୍ୟ ନ ସରଇ ଦିନ । ନା ଗୋ ସ୍ୱେ । ୪୪ ।

ଅଧିଗ୍ରାମ ବନେ ବୃଷଭାନୁ ଘର
ବିବିଧ ରତ୍ନେ ଘଟଣ,
ନନ୍ଦୀଶ୍ୱର ବନେ ନନ୍ଦ ରତ୍ନପୁର
ଖାଳ ହୋଇଲା ରଣଭଣ । ଦଇବ ହେ । ୪୫ ।

ପଟା ମଣ୍ଡୋଇ ଦୁମୁ ଦୁମୁ ଖଜିଲା
ଖଜିଲା ନାଟ-ମନ୍ଦର,
ଭଦ୍ର ଚଉପାଢ଼ି ଭୂପୂଡ଼ି ପଡ଼ିଲା
ଝଡ଼ିଲା ଅଟ୍ଟାଳ ପୁର । ଦଇବ ହେ । ୪୬ ।

ଝୋଷ ଗବାକ୍ଷ ମେଘନାଦ ଖଜିଲା
ଖଜିଲା ଜନ୍ମ ମଣ୍ଡୋଇ
ଚନ୍ଦ୍ରମଣ୍ଡଳ ପୁର ଝଡ଼ି ପଡ଼ିଲା
ଦେଖିଲେ ଡର ମାଡ଼ଇ । ଦଇବ ହେ । ୪୭ ।

ଜଗତୀ ଘର ମଲ— ରତ୍ନ ମନ୍ଦର
ବ୍ରହ୍ମପୁର ଗଲା ଝଡ଼ି,
ବିବିଧ ରତ୍ନ ପାଷାଣ ପାଲଟିଲେ
ଯେ ଯେଉଁ ଠାବରେ ପଡ଼ି । ଦଇବ ହେ । ୪୮ ।

---

୪୮—୪:—ଠାବେଣ (କ) । ୪୬—୨:—ସନ୍ଧେଇ ଗଲେ (କ) ।
୪୬—୧:—ପଟା ମୁଣ୍ଡୋଇ (ଖ, ଗ); (୪୬-୪) ଉଡ଼ିଲା ଅଟାଳ ପୁର (କ, ଖ

ମୁକ୍ତାନିଧି ପୁର          ନକ୍ଷତ୍ର ପ୍ରାୟେକ
ଗଗନେ ସମ୍ଭାଇ ଗଲେ,
ଗୋପ ଲୋକ ଶୋକ          କହୁଁ ନ ସରଇ,
ଏଡ଼େ କର୍ମ ହରି କଲେ । ଦଇବ ହେ । ୪୯ ।

ସୂର୍ଯ୍ୟକାନ୍ତ ପୁର          ବଜସ୍ଥା ନବର
ଅବାସେ ପଡ଼ିଲା ଭାଜି
ଗୁଣନିଧି ପୁର          ମଦନ-ମନ୍ଦିର
କେବଳ ଅଛୁ ଆଉଜି । ଦଇବ ହେ । ୫୦।

ଗୃହେ ନ ପଶନ୍ତି          କେଶ ନ ବାନ୍ଧନ୍ତି
ନ ପିନ୍ଧନ୍ତି ଚୀନବାସ,
ନ ରାନ୍ଧନ୍ତି ଅନ୍ନ          ନ ରୁଚେ ଭୋଜନ
ତେଜିଲେ ଜୀବନ ଆଶ । ଦଇବ ହେ । ୫୧ ।

କେବଳ ଆସିବା          ପ୍ରତିଆଶା ଥିଲା
ଯିବାବେଳେ କହିଥିଲେ,
ଦ୍ୱାରକା ରାଜ୍ୟେ          ବାରତା ପାଇଣ
ନିରାଶ ହୋଇ ରହିଲେ । ଦଇବ ହେ । ୫୨ ।

ବସିଲେ ନିଜ          ନୃପ ଭୋଗ ତେଜି
ସୁରଭି ରଖିବେ ଆସି,
ଦେବ ଋଷି ସଙ୍ଗ          ସଭା ତେଜି କି ସେ
ବ୍ରଜ ସଭାରେ ବସି । ଦଇବ ହେ । ୫୩ ।

ନିରନ୍ତରେ ଗୋପ          କୁମାରେ କାନ୍ଦନ୍ତି
ତରୁ ଲତା ଗଣ ସ୍ତବ୍ଧି,
ସୁରଭିବୃନ୍ଦହିଁ          ତୃଣ ନ ଚରନ୍ତି
ନ ଦିଅନ୍ତି କ୍ଷୀର ଦୁହାଁଇ । ଦଇବ ହେ । ୫୪ ।

ଗୋପୀମାନେ ଘର ତେଜି ମୋହଭର
କାହ୍ନ ନ ପାରନ୍ତି ରହି,
କ୍ଷଣେ କ୍ଷଣେ ଘୋର ଅରଣ୍ୟେ ପଶନ୍ତି
ଯେସନେ ଭୁଲନ୍ତି ବାଇ । ଦଇବ ହେ । ୫୫ ।

ତରୁ ଲତା ଚାହିଁ ନିବେଦନ କରନ୍ତି
ହା କୃଷ୍ଣ ହା କୃଷ୍ଣ ବୋଲି,
କ୍ରୀଡ଼ା ସ୍ଥାନ ଚାହିଁ ଉଠନ୍ତି ବୋବାଇ
ଅଛ କି ହେ ବନମାଳୀ । ଦଇବ ହେ । ୫୬ ।

ନାହିଁତ ବୋଲି ମସ୍ତକେ କର ମାରି
ପଡ଼ନ୍ତି କମ୍ପିତ ହୋଇ,
ଧାଇଁ ପଡ଼ି ସଖୀ କୋଳ କରି ଧରି
ସେହୁ ଉଠଇ ବୋବାଇ । ଦଇବ ହେ । ୫୭ ।

ଛାଡ଼ ଛାଡ଼ ସଖି ମୁଁ ବଡ଼ ଦୁଃଖୀ
କେ ମୋତେ ନେଉଛନ୍ତି ଅଛ
ସେ ମୋତେ ରଖିବ ଜାଣୁ କି ସଙ୍ଗାତ
କଉଁ ବନେ ଲୁଚିଅଛ । ଦଇବ ହେ । ୫୮ ।

ତୋତେ ଭାଳରୁ କି ମୋତେ ସମ୍ଭାଳରୁ
ଛାଡ଼ି ମେଲ ମୋର ଆଣ,
ପାରିଲେ ଯାଇଁ ରାଧାକୁ ସମ୍ଭାଳ, ଯା
ନକି ହୋନ୍ତି ପ୍ରାଣ ନାଶ । ଦଇବ ହେ । ୫୯ ।

ସଖୀକି ସମ୍ଭାଳି ଆସନ୍ତେ ସଜନୀ
ଯମୁନା-ପୁଳିନ-ବନେ,
ଦେଖିଲେ ରାଧିକା ଏକାନ୍ତେ ଭାଳନ୍ତି
ବସିଣ କେଳି ସଦନେ । ଦଇବ ହେ । ୬୦ ।

ଖୋଜ ଖୋଜ ବନେ ଶରଦ ସୁନ୍ଦରୀ
ସେହୁ ମିଳିଗଲା ଆସି,
ସଖୀ ମୁଖ ଚୁମ୍ବି ଲୋତକ କହଇ
ଶଶୀ କି ସୁଧା ବରଷି ? । ଦଇବ ହେ । ୬୧ ।
ଯେ ଯେଣେ ଥିଲେ । ଯୁବତୀଯୂଥ ଆସି
ବେଢ଼ି ବସିଲେ ପାରୁଶ,
ହା କୃଷ୍ଣ ହା କୃଷ୍ଣ ବୋଲି ସବୁ ସଖୀ
ମୁଖେ କଲେ ଉଚ୍ଚ ଘୋଷ । ଦଇବ ହେ । ୬୨ ।
ରାଧାରମଣ ଅର— ବିନ୍ଦ ଚରଣ
ବିନୁ ନୋହେ ଆନ ଗତି,
ମନ ଲୋଚନ କାଟନ ଦେବ ଚନ୍ଦ୍ରଇ
ବୃଷଭାନୁ-ସୁତା-ପତି । ଦଇବ ହେ । ୬୩ ।
ଇତି ଶ୍ରୀ ରହସ୍ୟମଞ୍ଜରୀ ନବମ ଛାନ୍ଦେ,
ଦ୍ୱାରକାମଣ୍ଡଳେ ନୃତ୍ୟଗୀତ ବନ୍ଦେ,
ଦଶମ ଛାନ୍ଦ ବର୍ଣ୍ଣନେ କେବଣ କେବଣ ଚରିତ୍ର
କହିବାକୁ ଆଜ୍ଞା ହେଉ ଅନାଦି ଅଚ୍ୟୁତ । ୯ ।

—:(୦):—

## ଦଶମ ~~ନବମ~~ ଛାନ୍ଦ

—*—

ତାଳ ଝମ୍ପା, ଉଲାଭଣା ବାଣୀରେ ଗାଇବ ।

ରାଗ—ମହ୍ଲାର ।

ଚରଣ ଅରୁଣ ରାଜେ,
(ଘୋଷା) କନକ ନୂପୁର ସାଜେ,
କଟି କିଙ୍କିଣୀ-ଧ୍ୱନି ଠଣରଣ କଙ୍କଣ ଝଙ୍କ ବାଜେ ।

(ଗୋ) ସଖି ରୁ ଯାଉ କନା,
କନାଇ ପାଶକୁ ଯାଉ କ ନା,
ରତନ ବସନ ହାର କଙ୍କଣ ଯାହା ମାଗୁ ତାହା ନଉ କି ନା । ୧ ।
ସଜଳ ଜଳଦ କାନ୍ତି,
ନୀଳମଣି ଜିଣି ଷାନ୍ତି,
ଅମଳ କମଳ ମୁଖ ମଣ୍ଡଳ ଅଳକ ଅଳକାପନ୍ତି,
ଗୋ ଦୂତ ରୁ ଯାଉ କ ନା । ୨ ।
ଅରୁଣ ଅଧର ସଜେ,
ମୁରଲୀ ମଧୁର ବାଜେ,
ନାସେ ମୋତିବର ଗଗନେ କି ଶୁକ୍ର ଅଧରପରେ ବସଜେ,
ଗୋ ସଖି ରୁ ଯାଉ କ ନା । ୩ ।
ଭାଲେ ଚନ୍ଦନର ବିନ୍ଦୁ,
(ଗୋ) ନବଡ଼ ଜଳଦେ ଇନ୍ଦୁ
ମଣ୍ଡିତ କୁଣ୍ଡଳ ଗଣ୍ଡମଣ୍ଡଳ ଚଣ୍ଡ କିରଣ ନିନ୍ଦୁ,
ଗୋ ଦୂତ ରୁ ଯାଉ କ ନା । ୪ ।
କୁଟିଳ କୁନ୍ତଳ ଚୂଳେ,
ରଞ୍ଜିତ ବିବିଧ ଫୁଲେ,
ବାମ୍ବେ ଝଲମଲ ମୟୂରପୁଚ୍ଛ ମଉ ମଧୁକର ଭୁଲେ,
ଗୋ ସଖି ରୁ ଯାଉ କ ନା । ୫ ।
ମୋତେ ସଜ କର ସଖି,
(ମୁଁ) କହ୍ନାଇଙ୍କ ଯିବ ଦେଖି,
ମୁରଲୀ ବଜାଇ ମନ୍ଦ ମନ୍ଦ କର ଦୂରୁଁ ଠାରୁ ଥାଇଁ ଆଖି ।
ଗୋ ଦୂତ ରୁ । ୬ ।

---

କଙ୍କଣ ଝଣ ବାଜେ [ଚ଼ଛ]; ୧-୩) ଗୋ କହ୍ନାଇ ଆଗରେ କହୁ କନା [କ], ମୋପାଇଁ କୃଷ୍ଣଙ୍କୁ କହୁ କ ନା (ଘ) ।

୨—୧:—ଭ୍ରାନ୍ତ ପ୍ରାପ୍ତ ସବୁ ପୋଥିରେ

ମୋର ଚରଣେ ଦିଅ ପାହୁଡ଼,
(ମୁଁ) ବନେ କରୁଥିବ ଧାଉଡ଼
ପାଦ ରୁଣ ଝୁଣ ଶବଦ ଶୁଣିଣ କହ୍ନାଇ ଆହୁଡ଼ ବାହୁଡ଼ ।
ଗୋ ସଖି ରୁ । ୭ ।

ନେତପିନ୍ଧସ୍ୱା ମଣ୍ଡାପଢ଼ସ୍ୱା,
(ମୁଁ) କହ୍ନାଇଙ୍କି ଯିବ ଲେଉଡ଼ସ୍ୱା ।
ଖଞ୍ଜି ଦିଅରେ ଚୂଡ଼ା ଗୁଞ୍ଜରବନ୍ଧ ସମନାଥ ଗରଗଡ଼ସ୍ୱା ।
ଗୋ ଦୂତ ରୁ । ୮ ।

ଭୁଣ ଦାମ ପର ବନ୍ଧ,
(ମୋର) ବାହୁଟି ଉପରେ ବାନ୍ଧ
ଶ୍ରବଣେ ଭିର ମୋ ଝଲକ ଚଳ ଫେରଚା ମୁକୁତାବନ୍ଧ ।
ଗୋ ସଖି ରୁ ଯାଉ କନା । ୯ ।
(ମୋର) ମୁକୁତା ପାଞ୍ଚଗୋଟିଆ,
(ଖଞ୍ଜିଦେ) ମୋର ନାସାପୁଟିଆ,
(ମୋର) କହ୍ନାଇ ପାଶକୁ ବାଜ ଯାଉଥିବ ଝମକ ଝମକ ଝୁଣ୍ଟିଆ ।
ଗୋ ସଖି ରୁ । ୧୦ ।

ଏତେ କହି କରି ବାଲୀ,
ମୋହେଣ ପଡ଼ିଲ ଢଳି
ଧାଇଁ ଧରି ସଖି ବେଦନ କରନ୍ତି ଆଲଟ ଚ୍ୱମର ଢାଳି ।
ଗୋ ଦୂତ ରୁ । ୧୧ ।
ଗୋବିନ୍ଦ ଗୋବିନ୍ଦ ବାଦ୍ୟ,
ଗଗନେ ଉଚ୍ଛୁଳେ ନାଦ
ଦେବ କହେ ପ୍ରଭୁ କେବେହେଁ ନୋହିବ ଗୋବିନ୍ଦଭାବ ବିଚ୍ଛେଦ । ୧୨ ।
ଇତି ଶ୍ରୀ ରହସ୍ୟମଞ୍ଜରୀ ଦଶମ ଗ୍ରନ୍ଥେ,
ରାଧିକାପ୍ରଲାପ ଗୋପୀ ବିଳାପ ବର୍ଣ୍ଣେ,

ଏକାଦଶ ଛନ୍ଦ ବର୍ଣ୍ଣିବେ କେବଣ କେବଣ ପ୍ରସ୍ତାବ,
କହିବାକୁ ଆଜ୍ଞା ହେଉ ଶ୍ରୀ ମୁଖ ପ୍ରଭୁ ଆପ । ୧୦ ।

—ః)○(ః—

## ଏକାଦଶ ଛାନ୍ଦ ।

❁○❁

ରାଗ—ମଙ୍ଗଳଧନାଶ୍ରୀ

ଏଥୁଅନନ୍ତରେ କୃଷ୍ଣ ଦ୍ୱାରାବତୀପୁରେ,
ରହନ୍ତି ହ୍ଲାପନେ ବସେ ପଲଙ୍କ ଉପରେ । ୧ ।
ଯୁବତୀସମୂହ ବେଢ଼ିଅଛନ୍ତି ପାଖୁରେ,
ସମସ୍ତେ ବେଢ଼ିଲେ ଗୀତ ବାଦ୍ୟ ନୃତ୍ୟରସେ । ୨ ।
ଗାୟେଣୀଙ୍କ ଗନ୍ଧ ଭ୍ରାନ୍ତି ଗ୍ରାହୁଷ୍ୟ ତରଙ୍ଗ,
ଦେଖିଣ ନ ଟଳେ ମନ ଲୋଚନ ସେ ଅଙ୍ଗ । ୩ ।
କ୍ଷଣେ କ୍ଷଣେ ମୋହ ଯାଇ ଗଡ଼ନ୍ତି ମୁରାରି,
କ୍ଷଣେ କ୍ଷଣେ ଉଠି ଗାୟେଣୀଙ୍କି ତଲେ କରି । ୪ ।
ଗାବନ୍ତି ଗାୟେଣୀ ଯିସ ବାବନ୍ତି ସେ ଯାହା,
ହସ୍ତ ପାଦ ଯେନ ବାର୍ଷି ଦେଖାବନ୍ତି ତାହା । ୫ ।
ନୟନର ଭଙ୍ଗୀ ଦେଖି ହୃଦୟ କାତର,
କାନ୍ଦନ୍ତି କାଛନ୍ତି ଛବ ବଚତ୍ର ସୁରୁର । ୬ ।
ତାଲ ତାନ ମାନ ଘଣ୍ଟ ଘୋର ଏ ମୂର୍ଚ୍ଛନା
ଉପାଙ୍ଗ ମର୍ଦ୍ଦଳ ସ୍ୱରମଣ୍ଡଳ ଏ ବୀଣା । ୭ ।
ପିନାକ ଅମୃତୀ ରବା ଡମ୍ଫ ଯେ ଦୋସରି,
ଝଙ୍କାର ଉଙ୍କାର ନାଦେ ବ୍ରହ୍ମାଣ୍ଡହିଁ ପୂରି । ୮ ।

---

୩—୨:—ମନ ନୟନ ଅନଙ୍ଗ (ଖ, ଗ), ଲୋଚନ ଅନଙ୍ଗ (ଘ) ।

ଗାବନ୍ତି ରାଧିକା ବଚନ ମୋହର ପ୍ରଳାପ,
ବ୍ରଜବଧୂବୃନ୍ଦ ବେଢ଼ିକରନ୍ତି ବିଳାପ । ୯ ।
ଗୋପେଶ୍ୱର ନାମେ ବନମଧ୍ୟେ ମହାଦେବ,
ପାର୍ବତୀ ସଙ୍ଗତେ ହର କ୍ରୀଡ଼ା ରଙ୍ଗ ଭାବ । ୧୦ ।
ଗୋପୀଙ୍କ ରୋଦନ ସ୍ୱର ସୁରସ ସୁବାଣୀ,
ଶତ ସରସ୍ୱତୀ ବୀଣା ଗୀତ ସ୍ୱର ଜିଣି । ୧୧ ।
କ୍ରୀଡ଼ାଭଙ୍ଗ ହୋଇ ହର ପାର୍ବତୀ ଉଠିଲେ,
ଗୋପୀଙ୍କ ରୋଦନସ୍ଥାନେ ବିଜୟ ସେ କଲେ । ୧୨ ।
ଉହାଡ଼େ ରହିଲେ ହର ଧବଳ ମୂରତି,
ପାର୍ବତୀ ମିଳିଲେ ଯାଇଁ ଗୋପୀଙ୍କର କତି । ୧୩ ।
ନ କର ସନ୍ତାପ ତୁମ୍ଭେ ସକଳ ଯୁବତୀ,
ନିକଟେ ଆସିବେ ମାଏ ତୁମ୍ଭ ପ୍ରାଣପତି । ୧୪ ।
ଏତେ କହି ଅନ୍ତର୍ଦ୍ଧାନ ହୋଇଲେ କାମାକ୍ଷୀ,
ତତକ୍ଷଣ ଚେତନା ପାଇ ଚାହାନ୍ତି ମୃଗାକ୍ଷୀ । ୧୫ ।
ମନେ ବିଚାରିଲେ ଏ ତ ଅନ୍ତର୍ଷ କାମିନୀ,
ନିଶ୍ଚୟେ ଆସିଣ ଥିଲେ ଦୁଃଖର ନାଶିନୀ । ୧୬ ।
ମହାରାସ ପୀଠ ଅଷ୍ଟଦଳଦ୍ୱାରେ ସ୍ଥିତ,
ବନ ଉପବନ ମଧ୍ୟେ ସମ୍ମୁଖେ ବସନ୍ତ । ୧୭ ।
ମହାଶମ୍ଭୁ ପ୍ରିୟା ଏ ଅନାଦ୍ୟ ଆଦ୍ୟନାରୀ,
ଏହାଙ୍କ ପ୍ରସନ୍ନେ ସର୍ବ ଦୁଃଖ ହୋଏ ପାର । ୧୮ ।
ଏହାଙ୍କୁ ଅର୍ଚ୍ଚିଣ ପୂର୍ବ ଇଶାଣ ସେ ଦଳେ,
କୃଷ୍ଣ ପତି ପାଇଥିଲୁ ପୁଣ୍ୟର ସେ ବଳେ । ୧୯ ।
କର୍ମର ଅବଳେ ଧର୍ମ ହରାଇଲୁ ଏବେ ।
ପାଲଟି ରହିବ ପିଠି ଦେଲା ଧର୍ମ ସେବେ । ୨୦ ।

---

୨୦—୨:—ପାଲଟିବ ଧର୍ମ କର୍ମ ପିଠି ଦେବ ସେବେ (ଚ)

କେ ଆମ୍ଭର ଇଷ୍ଟଗୁରୁ ଦେବତା ହୋଇବ,
କାହା ଯୋଗୁଁ ଅନ୍ଧ ଦିବ୍ୟ ଲୋଚନ ପାଇବ । ୨୧ ।
ତ୍ୟାଗିଲ ପିଣ୍ଡରେ କେହୁ ପୂରେଇବ ପ୍ରାଣ,
ନିମୀଛି ପଚାରୀ ଆମ୍ଭେ ତାହାରେ ଶରଣ । ୨୨ ।
ଶରଣତାରଣୀ ସେ ଅନାଦ ହରପ୍ରିୟା,
ଅନାଥିନୀ ଦେଖିଣ ସେ କରିଗଲେ ଦୟା । ୨୩ ।
ତାହାଙ୍କ କୃପାରୁ ଦିବ୍ୟେ ପାଇବୁ ମୁରାରି,
ପୁଣି ପ୍ରତିଆଶା ଧରି ମନକୁ ତଆରି । ୨୪ ।
ରାଧିକା ବୋଇଲେ ସଖି ଶୁଣ ମୋ ବଚନ,
ସତେକି ଆସିବେ ହରି ଥିବ ଏ ଜୀବନ । ୨୫ ।
ପ୍ରାଣ ସମ୍ଭାଳିବା ଦେଃହ ବହୁତ ସଃନ୍ଦହ,
କୃଷ୍ଣ ବିନୁ କ୍ଷଣେ ଏଥେ ନ ଲଗଇ ମୋହ । ୨୬ ।
କଷ୍ଟ ଦେହ ଇଛି, କୃଷ୍ଣ-ସୁଖ ଲଭ ଅର୍ଥେ,
କୃଷ୍ଣ ବିନୁ ଜୀବ ଥିବ କାହାର ନିମନ୍ତେ । ୨୭ ।
ସେ ଡେଣେ ଝିଙ୍କଇ ଆମ୍ଭେ ଏଣେ ଝିଙ୍କି ଧରି,
ଝିଙ୍କାଝିଙ୍କି ଦ୍ରବ୍ୟ କେତେବେଳେ ରଖିପାରି । ୨୮ ।
ନୟନୁ ଉପୁଡ଼ି ଗଲ୍ଲ ନଳିନ ଚାକୁଳି,
ଆବୋରି ରହିଛୁ ସେ ଲଗିବ ବୋଲି ପୁଣି । ୨୯ ।
ପୋଡ଼ୁ ଏ ଜୀବନ ସଖି ରହିଛୁ କପାଇଁ,
ବିଅର୍ଥ କାରଣେ ଏଥେ ହନୁ ସନୁ ହୋଇ । ୩୦ ।
ହରି ବିନୁ ନ ରୁଚଇ କେଉଁଣିହି ରସ,
ବିବିଧ ବ୍ୟଞ୍ଜନ ଅନ୍ନ ଲଗଇ ସେ ବିଷ । ୩୧ ।

---

୨୭—୧ :—ଏ ଦେହ ରଖିଛୁ କୃଷ୍ଣ (ଗ),
୩୦—୨:—ହନୁ ସନୁ (ଗ, ଘ) ।
୩୧—୧:—କେଉଁଣସି (କ, ଖ) ।

ଯେବଣ ଯମୁନା ନଦୀ ଜଳ ପରିମଳ,
ଗ୍ରୀଷମେ ତାକ୍ଷଣେ ଆତ୍ମା କରଇ ଶୀତଳ । ୩୨ ।
ସାତ ଚଣି ଗଙ୍ଗବାଣ ମିଶାଇ ପଇଡ଼,
କର୍ପୂର ମରିଚ ଯୁକ୍ତ ସ୍ୱାଦରସ ବଡ଼ । ୩୩ ।
ସେ ଜଳ ପିଇଲେ ଏବେ ଆତ୍ମା ବଇକୁଳ,
ମଳୟ ପବନ ବହେ ଅଗ୍ନି ସମତୁଲ । ୩୪ ।
ଯେବଣ ବନରେ ପଶି ସବଦୁଃଖ ହରି,
ସେ ବନ ହୋଇଲା ଏବେ ପ୍ରାଣକୁ ବଇରୀ । ୩୫ ।
ଯେବଣ ସୁସ୍ୱାଦ ପକ୍ୱଫଳେ ମନ ତୋଷି
ସେ ଫଳ ଦେଖିଲେ ଏବେ ଉଦୁଗର ଆସି । ୩୬ ।
ଯେବଣ କୁସୁମ ଗନ୍ଧେ ନାସିକା ସନ୍ତୋଷ,
ସେ ଗନ୍ଧ ହୋଇଲା ଏବେ ପ୍ରାଣକୁ ପରୀସ । ୩୭ ।
ଯେବଣ କୋକିଳ ସ୍ୱର ଶୁଣି ତ ଶରଧା,
ସେ ସ୍ୱର ଫୁଟାଇ ଏବେ ହୃଦେ କୁନ୍ତବାଧା । ୩୮ ।
ଯେବଣ ମଦ୍ଧାଣ ଦୃଷ୍ଟି ତେଜଇ କମାଣ,
ଅହଙ୍କାରେ ମାରେ ଏବେ ଅନୁକ୍ଷଣେ ବାଣ । ୩୯ ।
ଏତେ ଅଣଷ୍ଟରୁ ବର୍ତ୍ତିଥିବା ଗୋ କେମନ୍ତେ,
ସତେହେଁ ଆସିବେ କି ରୁକ୍ମିଣୀଦେବୀ-କାନ୍ତେ । ୪୦ ।
ଦୂତକା ବୋଇଲେ ଯାହା କହିଲେ ଭବାନୀ,
ସେ କାହିଁ ହୋଇବ ଆନ ଶୁଣିମା ସଜନୀ । ୪୧ ।
ଅବଶ୍ୟ ଆସିବେ ହରି ଏ କଥା ପ୍ରମାଣ,
କୃଷ୍ଣ ପ୍ରାଣପ୍ରିୟା ତୁମ୍ଭେ ଥିର କର ମନ । ୪୨ ।

---

୩୨—୨:—ବିରସ ମତରେ ଆତ୍ମା କରଇ ବିକଳ (କ) । ୩୬—୨:—ଉପକାର (କ) ୩୯—୨:—ଏବେ ସେ ଶର ମଦନ (ଗ) । ୪୧—୨:—ଶୁଣିମା ଗୋପାଣୀ (ଚ)

ଏବେ ଠାକୁରାଣୀ ବେଗେ କର ଗୋ ସଦନେ,
ସମସ୍ତେ ମିଳନ୍ତୁ ଯାଇଁ ଯେ ଯାହା ଭୁବନେ । ୪୩ ।
ଭୋଜନ ସଦନେ ତନୁ ସୁସ୍ଥ କର ସଖି,
ଅଧରୁଁ ଅଧୈର୍ଯ୍ୟ ଗୋ ନୋହିବା ଚନ୍ଦ୍ରମୁଖି । ୪୪ ।
ଏତେ ବୋଲି ସୁଶୀତଳ ଜଳେ ମୁଖ ଧୋଇ,
ଅଞ୍ଚଳେ ପୋଛୁଣ ବାଲୀ ବଞ୍ଚଣୀ ବଞ୍ଚଇ । ୪୫ ।
ବେନି ପାର୍ଶ୍ୱରେ ସଖୀ ବାହ୍ୟାଳମ୍ବ ଦେଇ,
ବୃନ୍ଦାବନ ମନ୍ଦିରକୁ ଆଣନ୍ତି ଚଲାଇ । ୪୬ ।
ମାଜଣା ମର୍ଦ୍ଦନ ସାର ପୁର ସବ ଶୋଧି,
ଅମୃତ ମଣୋହି ତାଙ୍କୁ କରାଇଲେ ନେଇ । ୪୭ ।
ପଲଙ୍କ ଉପରେ ବେଗେ କରାଇ ସୁନ୍ଦରୀ,
ଆଜ୍ଞା ମାଗି ବେଗେ କଲେ ଯେ ଯାହାର ପୁରୀ । ୪୮ ।
ସ୍ନାହାନ ଭୋଜନ ସାରି ଯେଝାମତେ ରହି,
କ୍ଷଣେ କ୍ଷଣେ ପ୍ରଭୁଙ୍କ ଆସିବା ବାଟ ଚାହିଁ । ୪୯ ।
ଶ୍ରୀରାଧାପତି ଚରଣେ ନିରନ୍ତରେ ଆଶ,
ଶରଣ ମାଗଇ ଦେବ ଦୁର୍ଲ୍ଲଭ ଯେ ଦାସ । ୫୦ ।
ଇତି ଶ୍ରୀ ରହସ୍ୟମଞ୍ଜରୀ ଏକାଦଶ ଛାନ୍ଦେ,
ଗୋପିକା ବେଦନେ ଉମାପ୍ରଶ୍ନ ପ୍ରବନ୍ଧେ,
ଦ୍ୱାଦଶ ଛାନ୍ଦ ବର୍ଣ୍ଣିବେ କେବଣ କେବଣ ଆସ୍ୱର
କହିବାକୁ ଆଜ୍ଞା ହେଉ ପ୍ରଭୁ ଏଥିର ଯେ ବଗ୍ୱର । ୧୧ ।

—୦—

୪୧ ୨:—ଶୁଣିମା ଗୋସାଣୀ (ଚ) । ୪୪—୨:—ଅତି ଅଧଇର୍ଯ୍ୟ (ଖ, ଗ) । ୪୬—୧:—ବାହ୍ୟାନାଦ (ଖ, ଗ ଛ), ବାହ୍ୟାଲ୍ଭର (ଚ) ବାହ୍ୟାଭର (ଘ) । ୪୬—୨: ଆସନ୍ତି ଚଲାଇ (ଘ, ଚ) । ୪୭—୧:—ମର୍ଦ୍ଦନ କରି (ଖ, ଗ, ଚ) ।

## ଦ୍ୱାଦଶ ଛାନ୍ଦ ।

*:୦:*

ରାଗ—କରୁଣା ଶ୍ରୀଆର

ମହା ଗ୍ରୀଷମ ଋତୁ ବୈଶାଖର ଶେଷ,
ବହିଲା ଝଞ୍ଜା ପବନ କୃଶାନୁ ବତାଶ ।
ପାଚିଲେ ଆମ୍ବ ପଣସ ତାଳଲେ ସକଳ,
ଜଳିଲା ଶରୀର ମୋ ଝଲିଲା କଳେବର । ଘୋଷା ।
ମୁଁ ଗୋ ମଲି ମଲି ମଲି,
କାନ୍ତ ମୋ ଉପେକ୍ଷି ଗଲେ କଉଁ ଦୋଷ କଲି । ୧ ।
ଗମ୍ଭୀର ଘରରେ ଗୋ ଗ୍ରୀଷମେ ନୋହେ ଶୋଇ,
ଦକ୍ଷିଣ ମେଲି ମନ୍ଦରେ ପ୍ରଭୁ ପଟଙ୍କ ରହି ।
କର୍ପୂର ଚନ୍ଦନ ସୁଶୀତଳ ଜଳେ ଗୋଳି,
ସ୍ୱାମୀ ସଙ୍ଗେ ବିବିଧ ବିନୋଦେ ବୋଲାବୋଲି । ୨ ।
ଫୁଟି ତାଳସଜ ପଣା ପଇଡ଼ କଦଳୀ,
କର୍ପୂର ମରିଚ ଝଣ୍ଡ ସିଙ୍ଗଡ଼ା ତାମ୍ବୁଳ ।
ମଣୋହି କରଣ ସ୍ନେହ ଖୁଆଇଣ ଖାଇ,
ସୁଖ ପାଇ ସ୍ୱାମୀ ଭୁଜ ପଞ୍ଜରେଣ ଶୋଇ । ୩ ।
ଶଷଭ ସମ୍ପୂର୍ଣ୍ଣ ସଖି ଆଷାଢ଼ର ଅନ୍ତେ,
ଶ୍ରାବଣ ପ୍ରବେଶ ଗୋ ଜଳଦ ଋତୁ ହୋନ୍ତେ,
ଗାଜିଲେ ଗଗନେ ମେଘ ସାଜିଲେ ବରଷା,
କି ଜାଣି ନିବଡ଼ ଘୋର ଅନ୍ଧକାର ନିଶା । ୪ ।
ଘଡ଼ଘଡ଼ି ଉପରେ ପଡ଼ଇ ଚଡ଼ଚଡ଼ି,
ଚଡ଼ଚଡ଼ି ଉପରେ ନିର୍ଘାତ ପଡ଼େ ମାଡ଼ି,
ବିଜୁଳି ଝମକେ ଗୋ ଚମକି ଉଠେ ହିଆ,
କେମନେ ବଞ୍ଚିବ ମୋର କୋଳେ ନାହିଁ ନାହା । ୫ ।

କମଳମା ବିଧଂସିଲେ, ଅବନୀ ଉଲ୍ଲସି,
ମାତଲେ ମଣ୍ଡୂକ ଯେ ଡାହୁକ ଡାକେ ମିଶି,
ନଦୀ ଯୋଡ଼ ବଢ଼ିଲେ, କଢ଼ିଲେ ସୁନାଗରୀ,
ସୁବେଶ ଯୁବତୀ କାନ୍ତ ପଥ ଅନୁସରି । ୬ ।
ପ୍ରବାସୀ ପୁରୁଷମାନେ ସର୍ବ କାର୍ଯ୍ୟ ଛାଡ଼ି,
ଘରକୁ ଅଇଲେ ପ୍ରିୟା ଗୁଣ ମନେ ପଡ଼ି,
ଏକମାତ୍ର ମୋର କାନ୍ତ ନଇଲେ ମୋ ପାଶ,
ନିଚୟେ ଜାଣିଲି ମୋର ତେଜିଲେ ମୁହାଁପ । ୭ ।
ଭାଦ୍ରବର ଅନ୍ତେ ସଖି ଆସିଣ ପଶନ୍ତେ,
ପ୍ରବେଶ ଶରଦ ଋତୁ ପ୍ରତେଜ ଆଦିତ୍ୟ,
ଗଗନୁ ଟଳିଲା ଭ୍ରମ, ମନ୍ଦ୍ର ଫଣୀ ପଶେ,
ବରଷା ବଞ୍ଚାଇ ମେଘ ନାନାବର୍ଣ୍ଣ ଦିଶେ । ୮ ।
ଉତ୍ତରୁ ଅଇଲା ଶୀତ ବିକାଳୀ କୁମାରୀ,
କାନ୍ତ ଥିଲା କାମିନଙ୍କି ଦୂରୁଁ ଅପସରି,
ଫୁଟିଲେ କୈରବ କିଆଁ ଚନ୍ଦ୍ରକାନ୍ତ ବଢ଼େ,
ଶ୍ରୋଣେନ୍ଦ୍ରା ରତି ଆରତେ ଶ୍ରୋଣେନ୍ଦ୍ର କ ଲେଢ଼େ । ୯ ।
କାର୍ତ୍ତିକ ସରନ୍ତେ ସଖି ମରୁଣିର ଆତପ,
କାକର ପଡ଼ିଲା ଭ୍ରମ ଋତୁ ପରକାଶେ,
ଦହିଲା କମଳ ବନ, ବନ୍ଧିଲା ଉତ୍ତରା,
ସୁସ୍ଥିର ହୋଇଲା ସିନ୍ଧୁ ସଧୀର ଲହରୀ । ୧୦ ।
ମରୁଆ ହସିଲା, କୁନ୍ଦ ଦେଖିଣ ବିକାଶ,
ଗାଇଲେ ଗାଆନ୍ତୀ ଗୀତ ଗୁଣ୍ଡକେଶୀ ରସ,
ଛୁଟିଗଲେ ନଦୀ ସବ, ଫିଟିଗଲେ ବାଟ,
ଘନ ଆସି ପାହୁଗଲା କାନ୍ତ ନାହିଁ ଭେଟ । ୧୧ ।

---

୮—୪ :—ବରଷାଭଣ୍ଡାଇ—ଖ ଛ । ୯—୪ :—ଶ୍ରୋଣୋନ୍ନ [ଗ, ଘ] ।

ଫିହୁଡ଼ା କେସର ସଖି ଗୁଆ ଘୃତ ପୋଇ,
କର୍ପୂର ମରଚ ମେଲି ମିଠା ଦୁଗ୍ଧେ ମୋହ୍ଵ,
ଘାଣଅଖଣ୍ଡ ମିଶାଇ ବଟା ଭରି ଥୋଇ,
ଶମ୍ଭୁନ ଦେଲେ କାନ୍ତ ଅଧରେ ଯୋଗାଇ । ୧୨ ।
ପୁଷର ଅନ୍ତରେ ସଖି ମକର ପ୍ରଖ୍ୟାତ,
ତ୍ରିବେଣୀ ଶିଶିର ଋତୁ ପବିତ୍ର ଜଗତ,
ମକର ସ୍ନାହାନ ଜନେ ଧର୍ମ ଅର୍ଥେ କରି,
କୁହୁଡ଼ି ପଡ଼ିଲା ଗୋ ଜାଡ଼ିଲା ବସୁନ୍ଧରା । ୧୩ ।
ଫୁଟିଲା ମାଧବୀ ଗୋ ଗୁଞ୍ଜିଲା କଣ୍ଡିଫୁଲ,
ଉଠିଲା କାଞ୍ଚନ କଢ଼ି କାମ-ଶର ତୁଲ,
ଲେଉଟିଲା ଉତ୍ତର ପବନ ନିଜ ସ୍ଥାନ,
ଉଠିଲା ଲହରୀ ସିନ୍ଧୁ ଅନନ୍ତର ଫେନ । ୧୪ ।
କାକ ଗର୍ଭ ଦେଖି ସଖି ହୋଇଲି ଚକିତ,
ଏତେବେଳେ ନ ଭେଟିଲି ଗହଣ-ବାରତ
କୁଚୁବେଲ ଚଉଁରିଲେ ଅତି ଉଗ୍ରଗନ୍ଧ,
ଚୂତର ବଉଳ ଦେଖି କୋଇଲି ଆନନ୍ଦ । ୧୫ ।
ମକର ସରନ୍ତେ ସଖି ଫଗୁଣର ଅନ୍ତ,
ଅଇଲା ବସନ୍ତ ଋତୁ ଅନଙ୍ଗ ସଙ୍ଗତେ,
ବହିଲାକ ମଳୟପବନ ଗନ୍ଧ ତୁଲେ,
ପଲ୍ଲବରେ ତରୁଲତା ଫୁଟିଗଲେ ଫୁଲେ । ୧୬ ।
ଘୃତେଶ୍ୱର ଗହଳ ସଖି ଗୋବିନ୍ଦଙ୍କ ଦୋଳ,
ସବଂସୁଖ ଦେନଗଲେ ମଦନ ଗୋପାଳ,
କହୁଁ କହୁଁ ଚୂତ ବୃକ୍ଷେ ଧରିଗଲେ କଷି,
କୋଇଲି ଢୀଡ଼ଇ ଚୂତ ଡାଳେ ଡାଳେ ବସି । ୧୭ ।

---

୧୫—୩—କୁଚୁବୋଲ ପ୍ରକାଶିତ (କ,ଖ) । ୧୬—୧—ଫଗୁଣ ପରନ୍ତେ ଛ ।

ଚଇତ୍ର ମାସରେ ରାଧାମାଧବ ସୁନ୍ଦର,
ବୃନ୍ଦାବନେ ପଶିଣ କେଳିର ଅନୁସର,
ଦେଖନ୍ତି ପଲ୍ଲବ ଲତା ତରୁ ଫଳ ଫୁଲେ,
ଦେବ କହେ ସଖୀ କର ଧର ଧର ବୁଲେ । ୧୮ ।
ଇତି ଶ୍ରୀ ରହସ୍ୟ-ମଞ୍ଜରୀ ଦ୍ୱାଦଶ ଛାନ୍ଦେ
ଦ୍ୱାଦଶ ମାସାଦି ଚଉଁରିରୁ ବନ୍ଧ
ତ୍ରୟୋଦଶ ଛାନ୍ଦ ବର୍ଣ୍ଣିବେ କେବଣ କେବଣ ବୋଧ
କହିବାକୁ ଆଜ୍ଞା ହେଉ, (ପ୍ରଭୁ) ଏଥିର ପ୍ରବୋଧ । ୧୨ ।

---

## ତ୍ରୟୋଦଶ ଛାନ୍ଦ ।

—:():—

ରାଗ—କଳାମଗୌଡ଼ା [ସୁନ୍ଦର ବାଣୀରେ ଗାଇବ] ।

ଏଥୁ ଅନନ୍ତରେ ଶୁଣ, ବଚସେ ଗିରା ପର ଗୁଣ,
ବୁଲନ୍ତି ବନେ ରାଧିକା, ସଙ୍ଗେ ବୃନ୍ଦିକା ହେ । ୧ ।
ବୃକ୍ଷକୁ ବୃକ୍ଷ ଦେଖାଇ, ତରୁଗଣମାନ ରାଜି,
କୃଷ୍ଣଙ୍କ ସୁନ୍ଦର ବାଳୀ, ପଢ଼ନ୍ତି ଛଳ ହେ । ୨ ।
ଏମନ୍ତେ ସକଳ ସଖୀ, ରାଧାଙ୍କୁ ଗୃହେ ନ ଦେଖି,
ଖୋଜନ୍ତି ନିକୁଞ୍ଜେ ପଶି ଭେଟିଲେ ଆସି ହେ । ୩ ।
ସମ୍ଭାଳି ନଅନ୍ତେ ରାଧା, ମନସିଜ-ଶରେ ବାଧା,
ଗନ୍ଧ ପୁଷ୍କରଣୀ ତୀରେ, ମିଳିଲେ ଧୀରେ ହେ । ୪ ।
ପୁଷ୍କରଣୀ ଚନ୍ଦ୍ରପାଟ, ମାଣିକ୍ୟ ପାବଚ୍ଛ ଘାଟ,
ମୁକୁତା ମରକତ ହେମ, ବଚିତ୍ର କମ ହେ । ୫ ।
ଜଳ ସୁଧାମୟେ ସ୍ୱାଦ, ହଂସ ଉତ୍ତବାକ ଖେଦ,
ଡାହୁକ ଡାକନ୍ତି ରଙ୍ଗେ ସୁକାନ୍ତା ସଙ୍ଗେ ହେ । ୬ ।

କମଳ କୈରବ ଶୋଭା,    ମଝେ ମଧୁଲୁଟ ଲୋଭା,
କୁସୁମ କେଶରେ ଜଳ    ଅତି ଉଜ୍ଜ୍ୱଳ ସ୍ୱେ । ୭ ।
ବେଢ଼ିଛି ଅଶୋକ ବନ,    ହୃଦସ୍ଥ କରଇ ଛନ୍ନ,
ବୃକ୍ଷଙ୍କେ ସୁବର୍ଣ୍ଣ ବେଢ    ସୁରନ୍ତେ ଭେଦ ସ୍ୱେ । ୮ ।
ମିଳଲେ ଅଶୋକ ମୂଳେ,    ବ୍ରଜବଧୂ ବୃନ୍ଦ ମେଳେ,
କୁସୁମ ତୋଳଇ ବାଳୀ,    ଗୁନ୍ଥଇ ମାଳ ସ୍ୱେ । ୯ ।
ଅଶୋକ ତରୁ ମଣ୍ଡାଇ    ତଳେ ସିଂହାସନ ଥୋଇ,
କରନ୍ତି ମଦନ ପୂଜା,    ଦେବୀ ଗିରିଜା ସ୍ୱେ । ୧୦ ।
କାମିନୀ କାମ ଦାୟିନୀ,    କାମାକ୍ଷୀ କାମ ରୂପିଣୀ
କାମର ଜନନୀ ମାତ,    ଆଦ୍ୟ ସମ୍ଭୂତ ସ୍ୱେ । ୧୧ ।
କାମନା ମୋ ସିଦ୍ଧ କର,    କାମ ସମୁଦ୍ରୁଁ ଉଦ୍ଧର,
କାମ-ବୀଜ ଧର ଦେବ,    ଶିବ ସମ୍ଭବ ସ୍ୱେ । ୧୨ ।
ଏ ରୂପେ କାମନା ସ୍ତବ,    କାମେଣ ବନସ୍ଥ ସବ,
ଅଶୋକ ମୂଳରେ ରହି,    ବୃକ୍ଷକୁ କହନ୍ତି ସ୍ୱେ । ୧୩ ।
ଅଶୋକ ଅଷ୍ଟମୀ ଆଜ,    ଅଶୋକ କର ମୋ କାର୍ଯ୍ୟ,
ଅଶୋକ କଳିକା ତୋଳି,    ପିଉଛୁ ଶୋକ ସ୍ୱେ । ୧୪ ।
ତୋହେ'ର ନାମ ଅଶୋକ,    ଖଣ୍ଡ ରୁ ମୋହର ଶୋକ,
ଏ କଥା ସବୁ ଜନଙ୍କୁ,    ପ୍ରାଣୀମାନଙ୍କୁ ସ୍ୱେ । ୧୫ ।
କାମର ତରୁ ପାଦାନ୍ତ,    କୁସୁମ ଶର ଭରତୀ,
ଧରଣ ବ୍ରହ୍ମାଣ୍ଡ ପୁର,    ଅଛୁ ଆବୋର ସ୍ୱେ । ୧୬ ।
ପଳାଇ ତ ବାଟ ନାହିଁ,    ଯେତେଣ ଯିବା ଅଛୁ ତହିଁ
ନାଶଙ୍କି ମାରଣ ବାଣ,    ଯେତେନ ପରାଣ ସ୍ୱେ । ୧୭ ।

---

୮—୨ :—ଗଛଙ୍କେ (କ, ଖ); ପୁରନ୍ତି—(ଗ, ଚ)

୯—୨ :—ଗୁନ୍ଥିଲେ (ଗ); ଗନ୍ଥଇ (ଚ)

ଏ ବୃକ୍ଷେ କୃଷ୍ଣଙ୍କ ରଥ, ପଲ୍ଲବ ପତ୍ର ହଲାଅ
ସମସ୍ତେ ମନରେ ପଡ଼ି ଆସ ବାହୁଡ଼ି ସ୍ନେ । ୧୮ ।
ଏ କୋକିଳମାନେ ଚଲ, ଶ୍ରୀକୃଷ୍ଣ ଛାମୁରେ ମିଳ
ଲେଉଟି ପାଳଟି ଯାଇ, ଆଣ କଢ଼ାଇ ସ୍ନେ । ୧୯ ।
ମଧୁକରମାଳା ଯିବ, କୃଷ୍ଣକୁ ବେଢ଼ି ରହିବ
କହିବ ଶ୍ରବଣ ଲଗି ଆସନ୍ତୁ ବେଗି ସ୍ନେ । ୨୦ ।
ଅଟଗୋ ଗୋ ଗନ୍ଧପୋଖରୀ, ତୋ ଗନ୍ଧ ଯାଉ ପ୍ରସରି
ଶ୍ରୀକୃଷ୍ଣ ହୃଦରେ ପୂରି ଆଣ ଓଟାରି ସ୍ନେ । ୨୧ ।
ସବୁରି ହୃଦଆନନ୍ଦ, ଅଟନ୍ତି ପରମାନନ୍ଦ,
କେମନ୍ତେ ରହିଛ ମୂର୍ଚ୍ଛି, ପିଣ୍ଡକୁ ଲେଛୁ ସ୍ନେ । ୨୨ ।
ଏତେକ ବୋଲି ଲେଉଟି, କ୍ରୋଧେ ଗଦଗଦ ହୋଠି
ମନ୍ଦରେ ପ୍ରବେଶ ହୋଇ, ମୁଖ ଶୁଖାଇ ସ୍ନେ । ୨୩ ।
ଗମ୍ଭିରୀ ଭିତରେ ପଡ଼ି ଶୋଇଲେ ବଦନ ମାଡ଼ି
କ୍ରୋଧେଣ ସକଳ ସଖୀ, ଗଲେ ଉପେକ୍ଷି ସ୍ନେ । ୨୪ ।
ଏଥୁ ଅନନ୍ତରେ ଆନ ଶୁଣ ବିଚିତ୍ର ବିଧାନ
ଦ୍ୱାରକା ଯୁବତୀ ଯୂଥ ଦେଖନ୍ତି ନୃତ୍ୟ ସ୍ନେ । ୨୫ ।
ଯେ ଯେତେ ଗାଇଲେ ଗୀତ ବିଚ୍ଛେଦ ବିବିଧମତ
ଚକିତ ସମସ୍ତେ ଶୁଣି, ନ ଆସେ ବାଣୀ ସ୍ନେ । ୨୬ ।
ସମସ୍ତେ ମନେ ବିଚାରି ଏ ନର୍ତ୍ତେ ମାୟାକୁମାରୀ
ଦେବଙ୍କ ଦୁର୍ଲଭ ଅଟ ଏହାଙ୍କ ଗତ ସ୍ନେ । ୨୭ ।
ସ୍ୱରୂପ ମାଧୁରୀ ଛଟା, ସୁହାଣୀ ଚଉସ୍ତା ଅଟା,
ତ୍ରିବଳ ଲଳିତ ଠାଣି, ତ୍ରିଜଗଜଣି ସ୍ନେ । ୨୮ ।

୨୨—୨:—ପିଣ୍ଡକୁ ଗଛୁ (ଚ); ପିଣ୍ଡକୁ ରଖି (ଗ) । ୨୫—୧:—ବିଚିତ୍ର ସନ୍ଧାନ (ଗ,ଚ) । ୨୬-୨:-ନୁଆସେ ବାଣୀ (କ,ଚ) । ୨୭-୧ ନଚସ୍ନେ (ଘ) ୨୭—୨:- ଭ୍ରାନ୍ତ (ଳ,ଗ) । ୨୮-୧:-ଚଢ଼ାସ୍ୱା ଚ), ଚଢ଼େସ୍ୱା (କ) ।

ହରଲେ ସକଳ ମନ, କାଶଲେ ଗାଶମା ଜନ
ଗୁପତେ କାହିଁ ଏ ଥିଲେ ଗର୍ଜ୍ଜି ଅଇଲେ ସ୍ୱେ । ୨୯ ।
ଶୁଣିଲୁ ନ ଥିଲୁ କର୍ଣ୍ଣେ, ଦେଖିଲୁ ନାହିଁ ଲୋଚନେ
ଏମନ୍ତ ଗୀତ କି ନୃତ୍ୟ, ବାଦ୍ୟ ସଙ୍ଗୀତ ସ୍ୱେ । ୩୦ ।
ଆମ୍ଭର ପ୍ରଭୁଙ୍କ କଥା, ଗୋପର ଯେତେ ବାରତା
ଏ କାହୁଁ ଶିଖି ଅଇଲେ, ଦେଖି କି ଥିଲେ ଏ । ୩୧ ।
ସୁନ୍ଦରପଣେ ବଳନ୍ତି, ବୁଦ୍ଧିରେ ସବୁ ଜିଣନ୍ତି
ବଚନେ ନୋହେ ତୁଲଇ, ଓଦ୍ଧୋବ ସାଇ ଏ । ୩୨ ।
ଏ ଦକ ହୁଅନ୍ତି ଗୋପୀ, ଅଇଲେ ମାୟାସରୂପୀ
କପଟେ ଅବ ଶ୍ରୀପତି ଅଣାଇଛନ୍ତି ଏ । ୩୩ ।
ଏହାଙ୍କର ତେଜ ଗୃହି, ପଳାଇ ତ ବାଟ ନାହିଁ,
କିଏ ଏ କାହାର ନାରୀ, ଜାଣି ନ ପାଶ ସ୍ୱେ । ୩୪ ।
ନଷ୍ଟସ୍ୱେ ପଶଲ ବୁଦ୍ଧି, ହରାଇ ବସିଲୁ ନିଧି
ଆଉ କି ରହିବେ ହରି, ଦ୍ୱାରକାପୁରୀ ସ୍ୱେ । ୩୫ ।
ଗାୟେଣୀ ଗୀତରୁ ଜାଣି, ଏଡ଼େ ସେ ଗୋପତରୁଣୀ,
ଏଡ଼େ ସେ ରାଧିକା ପ୍ରୀତି, ଦିବ୍ୟ ମୂରତି ସ୍ୱେ । ୩୬ ।
ଯାହା କହୁଥିଲେ ହରି, ଆମ୍ଭେ ତା ପ୍ରତେ ନ କରି
ମରଣ ଗଳାରେ ବାନ୍ଧି ମଣିଲୁ ନିଧି ଏ । ୩୭ ।
ପତ୍ନୀର ତ ଶକ୍ୟ ନାହିଁ ବାଧା ଆଉ ଦେବା କାହିଁ,
ଲୋକର ମୁଖରେ ଲୁଣ, ଦଶଲ ଠାଣ ସ୍ୱେ । ୩୮ ।
କି ଗୁଣେ ରାଜକୁମାରୀ, ଧାତା କଲା ନ ବଚ୍ଛରି
ଯେ ଯେଡ଼େ କରି ତା ଗୁଣ, ନ କରି ଖଣ ସ୍ୱେ । ୩୯ ।

---

୨୯—୧ :—ଘାଶଲେ (ଘ) ।
୩୯—୨—ନ କରି ଗୁଣ (ଚ) ।

ଆହେ ଜାଣ ଆହେ ରାଣୀ, ଗୋପୀ ଶୋଭାଗରାଜ୍ଞୀ
ଆହେ ଏ ସୃଷ୍ଟିରେ ରାଜା, ସେ ଆମ୍ଭ ପ୍ରଜା ଯେ । ୪୦ ।
ଶବ୍ଦରେ ଦାସୀପଣକୁ ଲକ୍ଷିଲେ ଜୋହାରି ତାଙ୍କୁ
ଏତେକ ବଚନ ନାଥ, ହେଉ ସୁମତ ଯେ । ୪୧ ।
ଏବେ ପ୍ରଭୁ ରକ୍ଷା କର, ମନରୁ କୋପ ସମ୍ବର
ବହୁତ ଅପରାଧ କଲୁ, ଜାଣି ନ ଥିଲୁ ଯେ । ୪୨ ।
ଶରଣାଗତ ବାନ୍ଧବ ହେ, ଶରଣରକ୍ଷଣେ ସେହୁ
ସର୍ବଦା ଆମ୍ଭେ ଶରଣ, କର କାରଣ ଯେ । ୪୩ ।
ବାଳକ ମାୟା ହରଣ, କେ ତହୁଁ ଅପୂର୍ବ ପାଶ
କରୁଣା ଯାହାକୁ କର, ସେ ହୋଇ ପାର ଯେ । ୪୪ ।
ଏବେ ହେ ଆମ୍ଭଙ୍କୁ ନାଥ, ତାହାଙ୍କୁ ସମର୍ପି ହାତ
ତାହାଙ୍କ ଶ୍ରୀମୁଖ ଦେଖି, ହୋଇବୁ ସୁଖୀ ଯେ । ୪୫ ।

ଅନ୍ତର୍ଗତ ଭାବ ଜାଣି ପ୍ରସନ୍ନ ସାରଙ୍ଗପାଣି
ଗୋପୀଏ ଗାଇଲେ ଆଗ, କ ଧନ ମାଗ ଯେ । ୪୬ ।
ଗୋପୀଏ କହିଲେ ଆନ, କିଛୁ ମାଗୁ ନାହୁଁ ଧନ
ଆମ୍ଭର ପିଅର ଦେବ, ନାହିଁ ଲୋଡ଼ିବ ଯେ । ୪୭ ।
ତୁମ୍ଭର ପଦ ଏ ସେହୁ ନାମ ତାଙ୍କ ଭାବଗ୍ରାହୀ
ନିକ ତୁମ୍ଭେ ସେହୁ ହୁଅ ହୋଇଲେ ଯାଅ ଯେ । ୪୮ ।

ଏତେ କହି ଅନ୍ତର୍ଦ୍ଧାନ ଅଦୃଶ୍ୟେ ପଶେ ଗଗନ
ପ୍ରବେଶ ଯେ ଯାହା ଅଙ୍ଗ, ଯେ ଯହିଁ ସଙ୍ଗ ଯେ । ୪୯ ।
ଗୋପୀଏଙ୍କ ମୁଖୁଁ ଶୁଣି ହକାଟ ସାରଙ୍ଗପାଣି,
ନୟନୁ ବହଇ ନୀର ମନ ଅଥିର ଯେ । ୫୦ ।

---

୪୧—୧:—ଲେଖିଲେ (ଖ, ଗ). ୪୨—୨— କଳବର (କ,ଖ,ଗ)
୪୮—୨:—ନିକ ଯେ ତୁମ୍ଭେହେଁ ହୁଅ (ଚ) ।

ସ୍ତବ କରଜର ହୋଇ, ରୁକ୍ମଣୀଙ୍କ ମୁଖ ଚୁମ୍ବି
ବୋଲନ୍ତି ଆଜ ସେ ଧନ୍ୟ ସୁଫଳ ଜନ ୟେ । ୫୧ ।
ତୁମ୍ଭ ଆମ୍ଭ ମନ ଜାଣି, ଦୟା କଲେ ଠାକୁରାଣୀ
ଗାୟେଣୀମାନଙ୍କ ସ୍ତବ, କଲ କି ଠାବ ୟେ । ୫୨ ।
ଏବେ ତୁମ୍ଭେ ଚଳଯାଅ, ଯେ ଯାହା ବିଧାନେ ରହ
ଜନର ସମସ୍ତ ଜାଣି, କହୁବା ପୁଣି ୟେ । ୫୩ ।
ଏହା ଶୁଣି ସର୍ବ ରାଣୀ, ନୟନୁ ନ ରହେ ପାଣି,
ମସ୍ତକ ପୋତି ଯୁବତୀ, ଉଷ୍ମର ଛନ୍ତି ୟେ । ୫୪ ।
ହୃଦୟେ ଶୋକ ସମ୍ଭାଳି, ଆରମ୍ଭେ ରହଣ ଢାଳି
ମେଲଣି ପାଇଣ ଗଲେ, ଗୃହେ ମିଳିଲେ ୟେ । ୫୫ ।
ଲଜ୍ଜାୟେ ଗଳିତ ହୋଇ, ଚନ୍ଦ୍ରାୟେ ଦୁର୍ବଳ ଦେଖି
ଭୋଜନ ଶୟନ ବିଧି, ନାହିଁ ସମ୍ଭାଷ ୟେ । ୫୬ ।
ବୋଲେ ସଖୀମାନେ ଧରି, ଭୋଜନ ବେସନ କରି
ବୁଝାଇ କହନ୍ତି କଥା, ଛଡ଼ାଇ ବ୍ୟଥା ୟେ । ୫୭ ।
ଏମନ୍ତେ ଶ୍ରୀ ଜଗନ୍ନାଥ ମର୍ଦ୍ଦନ ମାଜଣା ଗାତ୍ର
ସ୍ନାହାନ ଭୋଜନ ବିଧି, ତାମ୍ବୁଲ ପିଣ୍ଡି ୟେ । ୫୮ ।
ପଲଙ୍କ ପରେ ପହୁଡ଼ି, ରାଧା ଗୁଣ ମନେ ପଡ଼ି
ଉନ୍ନିଦ୍ରେ ପାହିଲା ରାତି, ଉଠି ବସନ୍ତି ୟେ । ୫୯ ।
ଦେବ କହିଲେ ଏହି ମତ ରାଧାଙ୍କ ସରୂପ ଚିନ୍ତ
କହିଲେ ଥୋକାଏ ଜନ, ଶ୍ରୀ ଭଗବାନ ୟେ । ୬୦ ।

ଇତି ଶ୍ରୀ ରହସ୍ୟମଞ୍ଜରୀ ତ୍ରୟୋଦଶ ଛାନ୍ଦେ,
ରାଧା ବିନେ ଗଦ୍ଗଦାକାମ.ର୍ଦ୍ଦନ ବନ୍ଧେ
ଚତୁର୍ଦ୍ଦଶ ଛାନ୍ଦ ବର୍ଣ୍ଣନେ କେବଣ କେବଣ ସ୍ତବ
କହିବାକୁ ଆଜ୍ଞା ହେଉ ଶ୍ରୀ ପଦ୍ମନାଭ । ୧୩ ।

---

୫୮—୨:– ତାମଲ (ପ) ।

—*—

# ଚତୁର୍ଦ୍ଦଶ ଛାନ୍ଦ ।

❋୧❋୨❋

ରାଗ—ପଟ୍ଟମଞ୍ଜରୀ (ଖ୍ରୀଷ୍ଟକ ବାଣୀରେ ଗାଇବ)

ଏଥିଁ ଅପୂରୁବ ରାତ, ଚଇତ ପୂର୍ଣ୍ଣିମୀ ରାତ,
ସୁମରଲେ ଶ୍ରୀଦ୍ୱାପତି ନିଜ ବାହନ ।
ଧ୍ୟାନେ ଥିଲା ଖଗେଶ୍ୱର, ତତ୍‌କ୍ଷଣେ ଉଠିଲା ଧୀର,
ଉଡ଼ିଲା ତେଜ ପ୍ରଖର, ଦୀର୍ଘ ଗଗନ । ୧ ।

ଆସନ୍ତେ ପକ୍ଷୀ ପବନ, ପ୍ରଳୟ ମେଘ ଗର୍ଜ୍ଜନ,
ଜଳଧି ଜଳ ତର୍ଜ୍ଜନେ ଗଗନେ ଉଠି ।
ଆସି ଖ ସ୍ୱରୂପ ଧରି, ପ୍ରଭୁଙ୍କ ଦର୍ଶନ କରି
ସନ୍ତୋଷ ହୋଇ ମୁରାରି ଆରୋହେ ପିଠି । ୨ ।

ବୋଲନ୍ତି ଲେ ଦାସି ଯାଅ, ସତ୍ୱରେ ବେଶ କରାଅ
ବହନ ଚଲାଇ ଆସ ରାଧା ଦର୍ଶନେ ।
ଆଜ୍ଞା ପାଇ ଦାସୀ ଗଲେ ସର୍ବ ଅଙ୍ଗ ସାମଲିଲେ
କର୍ପୂର କସ୍ତୁରୀ ଗୁଳେ ଗନ୍ଧ ଚନ୍ଦନେ । ୩ ।

ରତନ ବସନ ଶୋଭି ଅପରୂପେ ଆସ ଲୋଭି
କାମ ରତ୍ନବର କି ସେ ସମରେ ସାଜେ ।
କି ଏ ନବ କଳ୍ପତରୁ ଅଷ୍ଟରତ୍ନେ ଫଳା ଗରୁ
ଚନ୍ଦ୍ରହୁଁ ଅଧିକ ଗୁରୁ ମୁଖ ବିରାଜେ । ୪ ।

ବିଜୟେ ମହାମଣ୍ଡଳୀ ରୁକ୍ମଣୀ ରମଣୀମଣି
ଯୂଥ ଯୂଥ ଠାକୁରାଣୀ ସଙ୍ଗେ ବିଜୟେ,
ଦିବ୍ୟ ବେଶ ସର୍ବରାଣୀ ଯାର ଯେତେ ପରିଜନ
ସେବାଯୁଧ କରେ ଘେନି ସବେ ଚଳାୟେ । ୫ ।

ସକଳ ନୂପୁର ନାଦ, କଙ୍କଣ ମୁଦ୍ରିକା ବାଦ୍ୟ
ରୁଣୁଝୁଣିତ ଶବଦ ଘୋର ଚହଲ,
ପ୍ରଭୁଙ୍କ ପାଖରେ ଆସି ଦର୍ଶନ କଲେ ସୁକେଶୀ
ଘେନି ତ ନୁହଇ ପଶି ଅତି ଗହଳ । ୬ ।
ଶ୍ରୀହରି ବୋଇଲେ ଆସ ଗରୁଡ଼ ପୃଷ୍ଠରେ ବସ
ଯାଅ ପୂରତ,
ଶୁଣ ତୁ ଆଜ୍ଞା ଗରୁଡ଼, ଆମ୍ଭଙ୍କୁ ଘେନିଣ ଉଡ଼
ଶ୍ରୀବୃନ୍ଦାବନରେ ଛାଡ଼ ଆଜ ତୁରିତ । ୭ ।
ଶୁଣିଣ କଶ୍ୟପସୁତ, ମନରେ ହୋଇ ହରଷିତ
ପିଠି ବସ୍ତାରିଲ ଯାତ— ସପ୍ତ ଯୋଜନ,
ଶ୍ରୀକୃଷ୍ଣ ସହିତେ ତହିଁ ବସିଲେ ସମସ୍ତେ ଯାଇଁ
ସୁପାଠ ସେସ ପଡ଼ାଇ ଯାର ଯେସନ । ୮ ।
ଉଡ଼ିଲ ଗରୁଡ଼ ଯତ, ଅଦୃଶ୍ୟ ଗଗନଗତ
ମିଳିଣ କଦମ୍ବ କତ ଲୋଡ଼ନ୍ତି ପୃଚ୍ଛି,
ଏବେ କହ ଆଜ୍ଞା ପ୍ରଭୁ ବୁଝାଇ କହିବା ସବୁ,
ଶ୍ରୀକୃଷ୍ଣ ବୋଇଲେ ବାରୁ ଶୁଣ କହୁଛି । ୯ ।
ଏବେ ତୁ ଜଳକୁ ପଡ଼ ସଧୀରେ ସଧୀରେ ଉଡ଼
କଦମ୍ବ ଗଛରେ ଚଢ଼ି ପକ୍ଷ ପ୍ରସାର,
ବନ ଉପବନେ ଯେତେ ମଥୁରା ଗୋପ ସହିତେ
ଢାଙ୍କିବୁ ଗଗନମଣ୍ଡଳ ଅତି ବସ୍ତାର । ୧୦ ।
ଆକାଶ ପ୍ରାୟ୍ତ ପରେଣ୍ଡ ପାଇବେ ଜନ ସମସ୍ତେ
ନ ଦେଖିବେ କେହୁ ତୋଟତ ଉପ୍ସର୍ଗେ ରହ
ପୃଷ୍ଠରେ ଯୁବତୀ ସର୍ବେ ଅଦୃଶ୍ୟ ମତେ ରହିବେ,
ବୁଲି ବୁଲି ଦେଖିଥିବେ, କଷ୍ଟଲେ ବହ । ୧୧ ।

---

୬—ଃ—ରଣେଣନ୍ତ (କ); ରଣଝଣିତ (ଗ); ରୁଣଝୁଣିତ (ଘ);

ନବଙ୍କ ପିଠ ହୋଇବ,    ଏବେ ଠାଣ୍ଡବ ସଙ୍ଗ ଶ୍ରବ
ସେ ଯନ୍ତ୍ରି ଆଖି ବୁଝିବ    ଭଗିବ ସବୁ ।
ଯଉଁଠାରେ ଯେତେ ଲୀଳା    ବନ ଉପବନ ଖେଳା
ଦେଖିବେ ସବ ଅବଳା    ଯେମନ୍ତେ ବାବୁ । ୧୨ ।
ଏତେ ବୋଲି ହୃଷୀକେଶି    ଗରୁଡ଼ ପୃଷ୍ଠରୁ ଖସି
କଳ୍ପତରୁ ମୂଳେ ଆସି    ଜଟଲେ ରଙ୍ଗ ।
ସୁମରଲେ ସ୍ତୋକ କୃଷ୍ଣ    ଜାଣିଲା ପ୍ରଭୁଙ୍କ ମନ
ମିଳିଲା ଆସି ବନ୍ଧନ    ଉଚ୍ଛନ୍ନ ହୋଇ । ୧୩ ।
ତା ହାତେ ମୋହନବଂଶୀ    ରୂପରେ ଥୋଇ ଶ୍ୟାମାଙ୍ଗୀ
ଯାଇଥିଲେ ହୃଷୀକେଶି    ଦେଲା ସେ ଆଣି;
କୋଧେ ଗଦଗଦ ହୋଇ    ସକଳ ଦୁଃଖ ଜଣାଇ
କହିଲେ ତାଙ୍କୁ ମଣାଇ    କମ୍ପିତ୍ୱା ବାଣୀ ।
ଶୁଣ ମୋ ପ୍ରାଣ ସଙ୍ଗାତ    ତୁମ୍ଭେ ମୋର ପଞ୍ଚଭୂତ
କରନ୍ତରେ ମୋର ଚିତ୍ତ    ତୁମ୍ଭଙ୍କ ଠାଇଁ,
ଏବେ ତୁମ୍ଭେ ଚାଲିଯାଅ    ଅଲ୍ପଦିନ ମୁଁ ଛାଆ
ଦାମ ସୁଦାମଙ୍କୁ କହ    ସବ ବୁଝାଇ । ୧୪ ।
ବିଶାଳ ବୃଷଭ ତାକ    ବୋଧି କହ ଲକ୍ଷ୍ମିଣୀକ
ଦେବପ୍ରସ୍ଥ ବରୁଥିକ    କହିବୁ ଯାଇ,
ବସୁଦାମ ସୁଦାମଙ୍କୁ    କୁମୁଦ ଜୟନ୍ତକଙ୍କୁ
ଅର୍ଜୁନ ଧ୍ରୁବଳସ୍କୁ    କହ ତୁ ଯାଇ । ୧୫ ।
ଲବଙ୍ଗ ଲଳିତା ଆଗେ    କହିବୁ ମୋହୋ ସରାଗେ
ଖେଳନ୍ତି ସରବ ଲଗେ    ଥିବ ବସ୍ତ୍ର ।
ତୁମ୍ଭେ ଷୋଳହସ୍ର ସଙ୍ଗୀ    ମୋର ସ୍ୱଦେବ ଅନ୍ତରଙ୍ଗୀ
ତାହାଙ୍କୁ କହିବୁ ବେଗି    ଗୁପତ କଥ । ୧୬ ।

---

୧୩—୧:—ହୃଷିକେଶୀ—(କ, ଖ, ଚ) । ୧୪—୬:—ରହିଥାଅ, (ଖ, ଘ, ଛ) ।
୧୫ ୮:—ସବମଣାଇ (କ, ଗ) ।

ଆମ୍ଭ ପିତା ମାତା ସେବା    ତୁମ୍ଭଙ୍କୁ ଜଗତ ବାବା
ସମସ୍ତେ ସମ୍ଭାଳି ଥିବା    ମୋ ବୋଲ ମାନି,
ଦନୁଜ ବଳ ସଂହାରି    ଧରଣୀର ଭାର ହରି
ଫିବଈ ମୁଁ ନିତ୍ୟପୁରୀ    ତୁମ୍ଭଙ୍କ ଘେନି । ୧୮ ।
ବୋଧ ପାଇ ସ୍ତୋକକୃଷ୍ଣ    ପ୍ରଣାମ କରି ବନ୍ଦନ
ଆନନ୍ଦେ ନିଜ ସଦନ    ଚଳିଣ ଯାଇ,
ଏଥୁ ଅନନ୍ତରେ ହରି    ରାତ୍ରକୁ ରାଇ ଡଆରି
ଶିବ ଯୁଗ ସମ ବୃଣ    ପାଇବୁ ନାହିଁ । ୧୯ ।
ନିଦ୍ରାବତୀକ ଡାକିଣ    ଆଜ୍ଞା ଦେଲେ ନାରାୟଣ
ତୁ ଗୋ ନିଦ୍ରା ସ୍ୱରୂପିଣୀ    ମୋହିବୁ ସବୁ,
ଗରୁଡ଼ ପୃଷ୍ଠରେ ଯେତେ    ବ୍ରଜବଧୂ ମନ ମୋତେ
ପାଇବା ପର୍ଯ୍ୟନ୍ତେ ଏତେ    ଗୁଡ଼ିଣ ଥିବୁ । ୨୦ ।
ଆଗୋ ତୁ ତପନାବତୀ    ତପନ ପାତନା ପାଉ
ବଞ୍ଚାଇ ତୁ ନେବୁ ରାତି    ଜନମାନଙ୍କୁ
ଏତେକ ତାହାକୁ କହି    ଗଗନେ ଚନ୍ଦ୍ରକୁ ଚାହିଁ
ଆନନ୍ଦେ ଉତ୍ସୁକ ହୋଇ    ବୋଲନ୍ତି ତାକୁ । ୨୧ ।
ଶୁଣ ତୁ ଶଶଲାଞ୍ଛନ    ଧରଣ ଜଡ଼ କରଣ
ନିର୍ମଳ ତାରକାଗଣ    ମଧ୍ୟେ ବିରାଜ,
କାଳିନ୍ଦୀ କଦମ୍ବ ଚାହିଁ    ଯାହାକୁ ଯେମନ୍ତ କହି
କଦମ୍ବ ମୂଳରେ ରହି    ହୋଇଲେ ସଜ । ୨୨ ।
ରୁଚିର ଅଙ୍ଘ୍ରି ଯୁଗଳ    ସତାପୃଷ୍ଠ ଶ୍ରେଣୀ ତଳ
ମଞ୍ଜୀର ମଣି ମଞ୍ଜୁଳ    ପଦରେ ଦୋଳନ୍ତି,
କଣପୁ କିଙ୍କିଣୀ କଟି    ଶୃଙ୍ଖଳା ପ୍ରଖର ଘଣ୍ଟି
କୁଞ୍ଚିତ ପ୍ରକଟ ଧଟୀ    ପୀତପଟମା । ୨୩ ।

---

୧୮—୭ :—ନିଜପୁରୀ (ଗ, ଘ, ଛ) । ୧୯—୨ :—ପ୍ରଲମ୍ବ କରି (କ, ଖ)
୨୩—୭:—ଶୃଙ୍ଖଳା ଘୁଙ୍ଘୁର ଘଣ୍ଟି (ଚ); ମେଖଳା ଘର୍ଘର ଘଣ୍ଟି (ଘ, ଛ)

ଶ୍ରୀଅଙ୍ଗେ ଚର୍ଚ୍ଚିତ ଘୁସୃଣ
ସୁଗନ୍ଧ ଆମୋଦ
କସ୍ତୁରୀ କର୍ପୂର ଘସୁରୁ
କରୁ ଆନନ୍ଦ ବନ,
କଣ୍ଠେ କଉସ୍ତୁଭ ମଣି
ଶ୍ରବଣେ କୁଣ୍ଡଳମଣି
ମକର କିରଣ ଜିଣି
ଛନ୍ଦି ତପନ । ୧୪ ।

ନିରୁପାମ ନାସାପୁଟ
ସୁରଙ୍ଗ ଅଧର ତଟ
ସିନ୍ଦୁ ଫଳ ଝଟଝଟ
ପରେ ବସକେ
ଲୋଚନ ଅନଙ୍ଗ ଧନୁ
ଅଳକାବଳି ଯେପନ
ତରଙ୍ଗେ ତରଳେ ତନୁ
ଭୃଙ୍ଗ ପଙ୍କଜେ । ୧୫ ।

କପାଳେ ଚନ୍ଦନ ବିନ୍ଦୁ
ପକ୍କୋଟେ କୁମୁଦ ବନ୍ଧୁ
ନିନ୍ଦିତ ଶରଦ ଇନ୍ଦୁ
ବଳିତ ଛାଏ,
ମଉଳି-ମଣ୍ଡିତ-ଚୂଳ,
ଶିଖୀ ଶିଖଣ୍ଡ ଚଞ୍ଚଳ
ମାଳତୀ ବେଢ଼ି ଉଜ୍ଜ୍ୱଳ
ମଳୟ ବାଏ । ୧୬ ।

ଅଙ୍ଗଦ କଙ୍କଣ କରେ
ସଧୀରେ ମଧୁରେ ସ୍ୱରେ
ମୋହନ-ମୁରଳୀ ଧରେ
ଅଧର ତଳେ,
ନବୀନ କିଶୋର ଅଙ୍ଗ
ଦେବ ଚନ୍ଦ୍ରେ ତ୍ରିଭଙ୍ଗ
ଅନଙ୍ଗ ତରଙ୍ଗ ରଙ୍ଗ
କଦମ୍ବ ମୂଳେ । ୧୭ ।

ଇତି ଶ୍ରୀ ରହସ୍ୟମଞ୍ଜରୀ ଚତୁର୍ଦ୍ଦଶଛନ୍ଦେ,
ପ୍ରିୟ ପ୍ରିୟା ସଦନପ୍ରବେଶ ବନ୍ଧେ,
ପଞ୍ଚଦଶ ଛାନ୍ଦ ବର୍ଣ୍ଣିନେ କେବଣ କେବଣ ଉତ୍ତର,
କହିବାକୁ ଆଜ୍ଞା ହୋଉ ଶ୍ରୀ ନନ୍ଦକିଶୋର । ୧୮ ।

———

୧୬—୪:—ବିହିତ ଛାଏ (ପ, ଛ) ବନ୍ଧିତ ଛାଏ (ଚ) ।

# ପଞ୍ଚଦଶ ଛାନ୍ଦ

—୦—

ରାଗ—କଲ୍ୟାଣ ଆହାରୀ ।

ନବ କିଶୋର    କିଶୋରୀ ପ୍ରାଣନାଥ
ବିମ୍ବାଧରେ ବଂଶୀ ରୁପିଲେ,
ତ୍ରିଭଙ୍ଗ ଛନ୍ଦେ    କଦମ୍ବମୂଳେ ରହି
ମଧୁର ଧ୍ୱନି ଆଳପିଲେ,
ସୁସ୍ୱର,
ଧ୍ୱନି ଶୁଭିଲା ତିନପୁର,
ସଚରାଚର    ଜନ ମନ ହରିଲା
ସମାଧି ଟଳିଲା ଶିବର । ୧ ।
ସପତ ସାଗର    ଲହରୀ ସ୍ଥଗିତ
ଯମୁନା ଉଜାଣି ବହିଲା
ଶୁଷ୍କ ତରୁବର    ନବ ପଲ୍ଲବିତ,
ପାଷାଣ ତରଳି ଗଳିଲା
ଗଗନେ—
ଉଡ଼ନ୍ତା ଚଢ଼ାଇ ସ୍ଥକିଲେ,
ଗମ୍ଭୀର ଜଳୁଁ    ମତ୍ସ୍ୟମାନେ ଉନ୍ମତ୍ତେ
ଡେଇଁ ଯାଇଁ କୂଳେ ପଡ଼ିଲେ । ୨ ।
ପଶୁ ଜନ୍ତୁମାନେ    ମୁଖେ ଗ୍ରାସ ଘେନ
ଆକାଶକୁ ଚାହିଁ ରହିଲେ,
ବେଦବର ବେଦ    ପଢ଼ୁଁ ପାଶୋରିଲେ
ଧ୍ୱନି ଶୁଣି ମୋହ ହୋଇଲେ,
ସୁସ୍ୱର,
ପାହିଗଲା ରାଗ ଗାନ୍ଧାର
ନବ କିଶୋରୀ    ଚନ୍ଦ୍ର ମେଘ ଉଡ଼ିଲା
ଛାଡ଼ିଲା ମଦନ ଅନ୍ଧାର । ୩ ।

କାଚସ୍ୱପ୍ନରେ ରହି— ପଲଙ୍କେ ସୁନ୍ଦରୀ
ଅଳପ ନିଦ୍ରା ଯାଉଥିଲେ ।
ବଂଶୀ-ଆଳାପ— ଧ୍ୱନି କର୍ଣ୍ଣେ ଶୁଣନ୍ତେ
ସପନ ମଣି ଚମକିଲେ,
ସୁନ୍ଦରୀ—
ଢଳିଛି ପଡ଼ିଲେ ତଳରେ,
ନାହିଁ କି ମୀନ ଛୁଟିକି ତେଜିଁ ଆସି
ପଡ଼ିଗଲା ନଦୀ ଜଳରେ । ୪ ।
ଭେଦିଲା ଧ୍ୱନି ହୃଦୟ ଜର ଜର
ହଟସ୍ୱପ୍ନେ କାନ୍ଦି ଉଠିଲେ,
ବେଭୁଲ ମତି ଆରତ ହୃଦୟାନେ
ବିକଳେ କେତେ ସାଉଁଟିଲେ,
ସୁନ୍ଦରୀ,
ବଂଶୀର ରବ କ୍ଷଣେ ଶୁଣି,
ଏ ତ ବିପରୀତ କାହାର ଚରିତ
କୃଷ୍ଣ ଗଲେ ବନ୍ଦୁ ନ ଜାଣି । ୫ ।
ବ୍ରଜ କୁମାରେ ଏଥେ ଯେତେ ଅଛନ୍ତି
କାହାର ବଂଶୀ ଏ ନୋହଇ,
ଏଥର କୋଟି ଅଂଶ ଲେଶ ମାତ୍ରକୁ
ଲକ୍ଷିଲେ ସମ ଅଛୁ କାହିଁ,
ଏ ଧ୍ୱନି,
ଏ ମହା ମଧୁ ଯାମିନୀରେ,
କାହାପାଇଁ ଅବା କେହୁ ବଜାଇବ
ଯମୁନା ପୁଲିନ ବନରେ । ୬ ।
ଏତେବେଳେ ଆସି ହସିଛ ହୋଇଲେ
ଯାହା କହୁଥିଲେ ଅମ୍ବିକା,

ଏମନ୍ତ ବସ୍ତୁରୁ ବଂଶୀ ଡାକ ଦେଲା
ରାଧିକା, ରାଧିକା, ରାଧିକା,
ସୁନ୍ଦରୀ—
ଶୁଣି କର ଯୋଡ଼ି ହୋଇଲା,
କେଶ ବାସ ଅଙ୍ଗ— ମ୍ଳାନ ହୋଇ ବାଳୀ
କଦମ୍ବ ମୂଳକୁ ଧାଇଁଲା । ୭ ।
ଦେଖିଲେ ଦର୍ଶ୍ୟ— ମୂରତି ଗୋପୀନାଥ
ଗୁହ୍ନି ମଥା ପୋତି ରହିଲେ,
କିଶୋରବର ବଂଶୀ କରୁଁ ପକାଇ
ଧାଇଁ ପଡ଼ି ଭିଡ଼ି ଧଇଲେ,
ସୁନ୍ଦରୀ—
କ୍ରୋଧେ ଗଦ ଗଦ ବଦନ୍ତି,
କେ ତୁମ୍ଭେ କାହାକୁ ବଳେ ଧରୁଅଛ
ମୁହିଁ ଅନାଥିନୀ ଯୁବତୀ । ୮ ।
ଏହି ମତି ପର— ପୁରୁଷ ଜଣେକ
ଗୋପ ନଗରେ ରହିଥିଲା,
ଏହି ବନେ ପଶି ବଂଶୀ ବଜାଇ ସେ
ସବୁନ୍ତ ନାଶ କରିଗଲା,
ଏବେହେଁ—
ତୁମ୍ଭେ ଆସିଅଛ କାହିଁକି,
ତୁମ୍ଭେ ପୁଣି ନାଶ କରିବ କାହାକୁ
ପଗୃର ଅଇଲୁ ତହିଁକି । ୯ ।
ଛାଡ଼ ଛାଡ଼ ବୋଲି କ୍ରୋଧେ ଅସମ୍ଭାଳେ
ବୋବାଇ ଉଠିଲେ ସୁନ୍ଦରୀ,
ଦେଖି ଶ୍ରୀହରି ଲୋତକ ନ ରହଇ
ହୃଦେ ଭିଡ଼ିଲେ ଗାଢ଼ କରି,

ମୂଗର —
ମୁଖ ଚମ୍ବି ଶୋକ ହରଲେ,
ଗଳାରେ ଲମ୍ବାଇ ଚକ୍ଷୁର ଲୁଚୁଳ
କବରୀ ବାନ୍ଧି ସାମଲଲେ । ୧୦ ।
ଅଞ୍ଚଳେ ମୁଖ ପୋଛୁ ଦେଇ ବୋଲନ୍ତି
ଶୁଣିମା ମୋର ପ୍ରାଣେଶ୍ୱର,
ମୋର ମନ କଥା ତୁମ୍ଭେ କ ନ ଜାଣ
କେତେ କହିବା ଫେଡ଼ି କରି,
ସୁନ୍ଦର !
ଦେଖ ମୋ ଦେହ ରୂପ କାନ୍ତି,
ଝୁରି ଝୁରି ତନୁ ଝଡ଼ିଯାଉଅଛୁ
କେବଳ ରହିଛୁ ଜୀବନ୍ତ । ୧୧ ।
ରାଧିକା ବୋଇଲେ ନାଗରମାନଙ୍କ
ସାଗର ସାଗର ଏ ବୁଦ୍ଧି,
ମାମୁ ମାର ଦୋଷ ମେଣ୍ଟାଇ ପାରନ୍ତି
ମାଉଙ୍କ ଗଳା ଧରି କାନ୍ଦି,
ନାଗର,
ସେହି ମାୟାଧର ନୁହ କି,
କୋଟି ରାଜଜେମା ଯାହାକୁ ଖଟନ୍ତି
ସେ ପୁଣି ଝୁରେ ନର୍ମସଖୀକି । ୧୨ ।
ଶ୍ରୀକୃଷ୍ଣ ବୋଲନ୍ତି ଚନ୍ଦ୍ର ଦେବତାର
କୋଟି କୋଟି କନ୍ୟା ଅଛନ୍ତି,
ଯାମନୀ କନ୍ୟା ତା କ୍ଷଣେହେଁ ନ ଥିଲେ
ଛାଡ଼ଇ ତାର ଜ୍ୟୋତି କାନ୍ତି ?
ସୁନ୍ଦର !
ଶତ ବନ୍ଧୁ ଇନ୍ଦ୍ର ନୁହଇ,

ରାଧାକୃଷ୍ଣ ବୋଲି ଯୁଗ ଯୁଗାନ୍ତରେ
ଶାହାସ ପୁରାଣେ ଲହରି । ୧୩ ।
ରାଧା ବୋଇଲେ, ରାଧାକୃଷ୍ଣ ବୋଲାଇ
ଦୁସରନ୍ତା ହୋଇ କ ରହିବ,
ରାତ ରାତ ହୋଇ ଲୁଚ ଆସିଅଛ
ରାତ୍ର ନ ପାହୁଁ ପଳାଇବ,
ନାଗର,
ଏଥୁଁ ମରଣ ମଣି ଭଲ,
କ୍ଷଣକର ସୁଖ ସପନ-ସମ୍ପତ୍ତି
ପୁଣି ହି ସେହି କଲବଲ । ୧୪ ।
ଶ୍ରୀହରି ବୋଇଲେ ଏହି ଜଣି ସଖି
ଅନେକ ଯୁଗଯାଏଁ ଥିବ,
ବହୁତ ହାସ ବିଳାସ ରାସ ରସ
ଏହି ବୃନ୍ଦାବନେ ହୋଇବ,
ସୁନ୍ଦରି,
ମନେ କିଛି ଚିନ୍ତା ନ କର,
ତୁମ୍ଭର ପାଇଁ ନାନା ପାଞ୍ଚ କରନ୍ତୁ
ଏଥକୁ ହୁଅ ତତପର । ୧୫ ।
ଶୁଣି ସୁନ୍ଦରୀ ହୃଦୟ ଉଲ୍ଲସିତ
ଯୌବନୁଁ ବସନ ଖସିଲା ।
ମୁଖେ ମୁଖ ଚୁମ୍ବି ଭୁଜେ ଭିଡ଼ି ବାଳୀ
ଲମ୍ଫି ପଡ଼ି ତଳେ ବସିଲା,
ଗରୁଡ଼,
ଦେଖି ମୁଖ କଲା ପିଠିକି,
ପୃଷ୍ଠପରେ କୃଷ୍ଣ— ରାଣୀ ବସିଥିଲେ
ପକ୍ଷୀ ଉଡ଼ାଇଲା ଦୃଷ୍ଟିକି । ୧୬ ।

ରାଧାକୃଷ୍ଣ ପ୍ରୀତ                                    ସୁରତ ପ୍ରବନ୍ଧ
ଚୁମ୍ବନ ଆଲିଙ୍ଗନ ଖେଳା,
କାମ ସମୁଦ୍ରେ                                    ବେନି ଜନ ବୁଡ଼ିଲେ
ଛାପିଣ ଗଲା ଗ୍ୟାନ-ଭେଲା,
ସୁଜନେ,
ଚେତନା ବଳେ ପଅଁରିଲେ,
ଜଳ ପ୍ରବଳେ                                    ଉତୁରି ନ ପାରନ୍ତି
ଯୋଗେ ଭେଲା ପାଇ ତରିଲେ । ୧୭ ।

ସୁରତ ଅନ୍ତେ                                    ସନ୍ତୋଷ ବେନି ଜନ
କାମ ମନୋରଥ ପୂରିଲା,
କେଶ ବସନ ବାସ                                    ପରିଧାପନ
ମନମଥ ଅପସରିଲା,
ସୁଜନେ,
ରାଧାକୃଷ୍ଣ ପଦ୍ମଚରଣ,
ନରେଷି ଦେବ                                    କରନ୍ତିରେ ଆରତ
ଫୁକାରି ମାଗଇ ଶରଣ । ୧୮ ।

ଇତି ଶ୍ରୀ ରହସ୍ୟମଞ୍ଜରୀ ପଞ୍ଚଦଶ ଛାନ୍ଦେ,
ରାଧିକାରମଣ ସୁଖ ପ୍ରସନ୍ନ ବନ୍ଧେ,
ଷଷ୍ଠଦଶ ଛାନ୍ଦ ବର୍ଣ୍ଣନେ କେବଣ କେବଣ ଇଚ୍ଛାଟ
କହିବାକୁ ଆଜ୍ଞା ହୋଉ ଶ୍ରୀ ନନ୍ଦସୁତ । ୧୯ ।



---

୧୮—୪ :—ମନ୍ମଥ, (କ, ଖ, ଚ) ।

# ଷଷ୍ଠଦଶ ଛାନ୍ଦ ।

**୧**୨**

ରାଗ—ଆନନ୍ଦ ଭୈରବ (ଖେମଟା ସ୍ୱରେଣ ଗୀୟତେ)

ଶ୍ରୀ ଗୋପୀକାନ୍ତ, ଗୋପୀଙ୍କ ଧନ
ଗୋପୀ ନାମ ଧରି ଦେଲେ ବଇଁଶୀ ସ୍ୱନ । ୧ ।

ଆସ ଗୋ ବୃନ୍ଦ, ଏ ମୋର କନ୍ଦ,
ରତନ କଟକ ଗନ୍ଧ ଚନ୍ଦନ ଘେନ ।୨।

ଆସ କମଳା, ଗୋ କଳବା ଖେଳା,
ତୁମ୍ଭର ମଣ୍ଡଳୀ ମୁଖ୍ୟ ନବ ଅବଳା । ୩ ।

ଆସ ମାଧବୀ, ଗୋ ସୁଖ ସାଧବୀ,
ତୁମ୍ଭର ମଣ୍ଡଳୀ ମୁଖ୍ୟ ଯେତେକ ଦେବୀ । ୪ ।

ହେ ବୃନ୍ଦାବତୀ, ଆସ ତତ୍କ୍ଷତ,
ତୁମ୍ଭ ସଖୀ ଅନୁଚରୀ ଯେତେ ଯୁବତୀ । ୫ ।

ଆସ ଲଳିକା ଗୋ ଚନ୍ଦ୍ର ବଳିତା,
ଦିବ୍ୟ ଅଷ୍ଟ ସପ୍ତ ଅଷ୍ଟ ଶତ ଗଣିତା । ୬ ।

ବୀଣା କାରିଣୀ, ଦେବକ ତରୁଣୀ,
ବହନ ଚଳାଇ ଆସ ଦ୍ୱାରଧାରିଣୀ । ୭ ।

ଇନ୍ଦୁଦା ସଖି (ଗୋ) ଆସ ସୁମୁଖି,
ସହସ୍ରେକ ସଖୀ ତୁମ୍ଭ ସଙ୍ଗତେ ଲେଖି । ୮ ।

ଶ୍ରୁତି ସ୍ୱରୂପୀ ବିଶ୍ୱଧରୂପୀ,
ତୁଳସୀ ସହସ୍ର ତୁମ୍ଭ ମଣ୍ଡଳୀ ଗୋପୀ । ୯ ।

---

୩—୨—ମଣ୍ଡଳୀ ଯୂଥ (ଖ, ଛ)

୬—୨—ଅଷ୍ଟ ଅଷ୍ଟ ବନିତା (କ, ଖ) ।

ଆସ ଗୋ ଚନ୍ଦ୍ର, ସାଧିବ ବାଲୀ
ବତିଶସହସ୍ର ଲକ୍ଷ ଗୁମ୍ଫ ମଣ୍ଡଳୀ । ୧୦ ।
ପ୍ରସନ୍ନା ବାଳ, ଆସ ସମ୍ଭ୍ରାନ୍ତ,
ଛତିଶ ସହସ୍ର ଲକ୍ଷ ଗୁମ୍ଫ ମଣ୍ଡଳୀ । ୧୧ ।
ମୃଦୁ ସିଦ୍ଧାନ୍ତି, ଆସ ଗୋ ବେଗି,
ଅଠାଶୀସହସ୍ର କନ୍ୟା ନବାନୁରାଗୀ । ୧୨ ।
ରାସ ଭିଆଣ, ସୁମନ ଆଣ,
ଯେ ଯାହା ବାଦ୍ୟ ଆୟୁଧ ସଭରମ୍ଭଣ । ୧୩ ।
ଯେନଣ ବେଗେ, ଆସ ସଯୋଗେ,
ନୀପତରୁମୂଳେ ସଖି ଭେଟ ମୋ ଆଗେ । ୧୪ ।
ମୂରଲୀ ଧ୍ୱନି (ସେ) ଏସନ ଶୁଣି,
ଉଚ୍ଛନ୍ନ ହୋଇଲେ ସବ ଗୋପ ତରୁଣୀ । ୧୫ ।
ନ ରହେ ମନ, ନାହିଁ ଗିଆନ,
ଯେଣଲେ ଆଜ୍ଞା ପ୍ରମାଣେ ରାସବଧାନ । ୧୬ ।
ମତ ବହୁଳେ (ସେ) ଧାଇଁଲେ ବେଳେ,
ଦେଖିଲେ ଦିବ୍ୟମୂରତି କଦମ୍ବ ମୂଳେ । ୧୭ ।
ରାଧାଙ୍କୁ ଦେଖି ହସିଲ ସଖୀ,
ବୋଇଲ ସକଳେ ହଂସ ବସିଲ ନାକ । ୧୮ ।
ଦୂତିକା ବାଣୀ ରାଧିକା ଶୁଣି,
ହସି ମୁଖ ବନ୍ଦ କଲ ନବତରୁଣୀ । ୧୯ ।
ଏମନ୍ତେ କହୁ ଦୂତିକା ପାଇଁ,
ଶ୍ରୀଚରଣ ପଖାଳ ଉଦକ ପିବଇ । ୨୦ ।

---

୨୦—୧:—କୃଷ୍ଣ କଟକ ପାଇଁ (ଛ) ।

ଦେଖି ଶ୍ରୀହରି ଯାଉଁଛି ଧରି,
ଦକ୍ଷିଣ ହୃଦସ୍ଥ ଭାଗେ ଉଡ଼ିଲେ ନାରୀ । ୨୧ ।

ବାମେ ରାଧିକା ଯାମେ ବୃନ୍ଦକା,
ମଧ୍ୟେଣ ଶ୍ରୀକୃଷ୍ଣ ଶୋହେ ବେଢ଼ି ଗୋପିକା । ୨୨ ।

ହରି ଶବଦ କରି ଆନନ୍ଦ,
ଖଟିଲେ ଯେ ଯାହା ସେବା ଗୋପିକାବୃନ୍ଦ । ୨୩ ।

ଦେଖି ଶ୍ରୀପଦ ଉଚ୍ଛୁକମତ,
ଗୋଟିଏ ଗୋଟିଏ ଆଣି କୋଲ କରନ୍ତି । ୨୪ ।

ଲୋଭେ ଯୁବତୀ ମୁଖ ଚୁମ୍ବନ୍ତି,
ମଧୁ ଲୋଭେ ମାଛି ଯେସ୍ନେ ଜଡ଼ି ପଡ଼ନ୍ତି । ୨୫ ।

ଆସି ନ ପାରି ରହିଲେ ପୂରି .
ମନ ଜାଣି ହରି ହୃଦ ବିସ୍ତାର କରି । ୨୬ ।

ଏକଇ ମୁଖ, ଶରୁନ୍ତି ସୁଖ
ବହୁତ କାଲର ଗଲା ବିରହ ଦୁଃଖ । ୨୭ ।

ସନ୍ତୋଷ ହୋଇ, ଶ୍ରୀମୁଖ ଚାହିଁ,
ବୋଲନ୍ତି ଅଇଲ ପ୍ରଭୁ ମଲୁ ଜାଆଇଁ । ୨୮ ।

ଶ୍ରୀହରି ଭାଷି, ତୁମ୍ଭେ ମୋ ଆଖି,
ଆଖିଠାରେ ହେଲା ସଖି କାହାର ଦେଖି । ୨୯ ।

ଜାଣ ତ ତାହା, ଗୋ କହିବା କାହା,
ପଡ଼ିଗଲୁ ମଧୁବନେ ପ୍ରମାଦ ଯାହା । ୩୦ ।

ତହୁଁ ପଳାଇ, ସବୁ ଚଳାଇଁ,
ସମୁଦ୍ର ମଧ୍ୟରେ ଗଡ଼େ ବାନ୍ଧିଲୁ ନେଇଁ । ୩୧ ।

---

୨୫—୨:—ଉଡ଼ି ପଡ଼ନ୍ତି (କ, ଘ) ଜଡ଼ି ପିବନ୍ତି (ଛ) ।

ଆନ ନଚଳ, ବସ୍ତୁର ଅଳ,
ବୃନ୍ଦାବନେ ବେଷ୍ଟରେ ଗଲ ଏତେକ କାଳ । ୩୨ ।
ଆମ୍ରର ଅସ୍ତ୍ରେ, ଜୃମ୍ଭର ଜସ୍ତ୍ରେ,
ଏ କଥା ବସ୍ତୁର ସଖି କର ସଦସ୍ତ୍ରେ । ୩୩ ।
ଏବେ ଗୋ ଯାଅ, ସୁବେଶ ହୁଅ,
ଯେ ଯାହା ମଣ୍ଡଳେ ପଞ୍ଚା ପଞ୍ଚାରେ ରହ । ୩୪ ।
ଆଗଂୟା ପ୍ରମାଣେ, ନାୟିକା ଗଣେ,
ଆବୋର ପଦ୍ମଦଳ ଯେ ଯାହା କୋଣେ । ୩୫ ।
ଆବର ସଖି, ଯେତେକ ଦେଖି,
ଏକ ଅଧିଷ୍ଠାତ୍ରୀ ମୂଳେ ସହସ୍ରେ ଲେଖି । ୩୬ ।
ସେ ସଖୀମାନେ, ଗଲେ ବହନେ,
କୁସୁମ ତୋଳିବା ଅର୍ଥେ ପଶିଲେ ବନେ । ୩୭ ।
କଦମ୍ବମୂଳେ, କର୍ଣ୍ଣିକାଦଳେ,
କୋଟିଏ ସୂର୍ଯ୍ୟର ଜ୍ୟୋତ ଅତ ଉଜ୍ଜ୍ୱଳେ । ୩୮ ।
ତହିଁ ମଧ୍ୟରେ, ପଦ୍ମକେଶରେ,
ବିଜୟ ପରମାନନ୍ଦ ପଲଙ୍କ ପରେ । ୩୯ ।
ରାଧାଙ୍କ ସଙ୍ଗେ, ଦୂତକା ରଙ୍ଗେ,
କର୍ପୂର ଚନ୍ଦନ ଗୋଳ ବୋଳନ୍ତି ଅଙ୍ଗେ । ୪୦ ।
ରଞ୍ଜିଲେ ଚୂଳ, 'ସେ' ମଣ୍ଡିଲେ ଫୂଲ,
ମୟୂର ଶିଖଣ୍ଡ ନିନ୍ଦେ ଚନ୍ଦ୍ରମଣ୍ଡଳ । ୪୧ ।
ଚନ୍ଦନ ଚିତା ଭାଲେ ରଞ୍ଜିତା,
ନବଭ୍ର ଜଳଦେ କିଏ ଚନ୍ଦ୍ର ଉଦିତା । ୪୨ ।

---

୩୫—୨ :—ଆବୋର ରହିଲେ ପଦ୍ମ ଯେ ଯାହାର ଦଳେ (ଗ, ଚ) ବନେ (ଘ) ।

୪୧—୧ :—ମଣ୍ଡିଲେ ମୂଳ (କ, ଚ) ।

ଅଳକା ଶୋଭା, କସ କହିବା,
ଭ୍ରୂଲତା ଅତନୁ-ଧନୁ-ଗଞ୍ଜନ-ଆଭା । ୪୩ ।

ନୟନ ବାଣ, ସେ ଦହେ ପରାଣ
ଗଞ୍ଜିଲେ ବାରିଧିଫଳ ନାସା ପୁଟେଣ । ୪୪ ।

କୁଣ୍ଡଳମଣି, ଗଣ୍ଡେ ମଣ୍ଡଣି,
କଣ୍ଠରେ ଗଞ୍ଜିଲେ ସୂର୍ଯ୍ୟ ଉଜ୍ଜ୍ୱଳ ମଣି । ୪୫ ।

ବଳଣ ଭୁଜେ, (ସେ) ମର୍କତେ ରାଜେ
ଅଙ୍ଗଦ କଙ୍କଣ ବେନି କରେ ବିରାଜେ । ୪୬ ।

କଟୀରେ ଧଟୀ, ପୀତ ପ୍ରକଟି,
କୁଞ୍ଜ କାଛୁ ପିନ୍ଧାଇଲେ ଗଞ୍ଜିଲେ ପଣ୍ଡି । ୪୭ ।

ରତ୍ନ ମେଖଳା, କିଙ୍କିଣୀମାଳା
ସଜଳ ଜଳଦେ କି ଏ ତଡ଼ିତ ଖେଳା । ୪୮ ।

ଅଙ୍ଘ୍ରି ଯୁଗଳେ, ମଞ୍ଜୀର ଦୋଳେ,
ସେ ପାଦକମଳେ ଦେବ ମନଭ୍ରମଳେ । ୪୯ ।

ଇତି ଶ୍ରୀ ରହସ୍ୟମଞ୍ଜରୀ ଷଷ୍ଠଦଶ ଛାନ୍ଦେ,
ଗୋପିକା ପଟଳ ମନ ଉଲ୍ଲାସ ବନ୍ଧେ,
ସପ୍ତଦଶ ଛାନ୍ଦ ବର୍ଣ୍ଣିବେ କେବଣ ଚରିତ,
କହିବାକୁ ଆଜ୍ଞା ହେଉ ଏଥିର ସେ ଚରିତ । ୧୬ ।

—※—

୪୮ ପଦ ପରେ "ଛ"ରେ (ତ୍ରିଭୁ) ପାଦେ ପାହୁଡ—(୯ତ) ଶବଦ ଚାତ ଯୁବ ମାରଣେ କଏ କାମ ପାହୁଡ଼ । ଏ ପଦକ ଅଛୁ ॥

# ସପ୍ତଦଶ ଛାନ୍ଦ

—⁂—

ରାଗ—ବଙ୍ଗଳା କଉଶିକ ।

ରାଧା ଅଙ୍ଗ ତେଜ ଉଜ୍ଜ୍ୱଳ ଜ୍ୟୋତି,
ଛବି ଛଟାକେ ଗତ ଭ୍ରାନ୍ତ ମୂର୍ତ୍ତି ।
ଦେଖି ମୋହ ଗଲେ ନୃପକୁମାରୀ,
ହେଲେ ହଜିଲ ଜ୍ଞାନ ସବୁଙ୍କର ।
ଶ୍ୟାମ ହେ ସେ କେତେବେଳେକ ବେଳେ,
ଚେତନା ପାଇ ଉଠିଲେ ସକଳେ । ୧ ।
ଏକ ଉପରେ ଆରେକ ଆଉଜି,
ବସିଲେ ସଭ୍ରାନ୍ତ ନୟନ ବୁଜି ।
ରୁନ୍ଧି ଲୋଡ଼ିଲେ ନ ପାରନ୍ତି ରୁନ୍ଧି,
ମୋହେ ଟଳମଳ ଦେଖିଲ କନ୍ଧି ।
ଶ୍ୟାମ ହେ, ପୁଣି ପୁଣିହି ଉଠି,
ସ୍ୱପ୍ନ ପ୍ରାୟେ ବକବକାଇ ଉଠି । ୨ ।
କ୍ଷଣେ କ୍ଷଣେ ଜ୍ଞାନ ହଜିଲ ଯେଣୁ,
ଚେତ ପ୍ରଭୁଙ୍କୁ ଚିନ୍ତା କଲେ ତେଣୁ ।
ବୋଇଲେ ପ୍ରଭୁ ରକ୍ଷା କର ତୁମ୍ଭେ,
ତୁମ୍ଭେ ନ ରଖିଲେ ମରିଲୁ ଆମ୍ଭେ ।
ପ୍ରଭୁ ହେ, ଦେଖି ଆସିଛୁ ଯାହା,
କୃପା କଲେ ସିନା ଦେଖିବୁଁ ତାହା । ୩ ।
ଶରୀରେ ଅମ୍ଭର ଧଇର୍ଯ୍ୟ ରହୁ,
ମୋହ ଗୁଡ଼ି ଦବ୍ୟ ଚେତନା ହୋଉ ।
ଯେବେ ଏ ହୃଦୟ ଦୃଢ଼ ହୋଇବ,
ମନ ଅନ୍ତରେ ଲୋଚନ ରହିବ । ଅନ୍ତିନେ

ପ୍ରଭୁ ହେ, ତେବେ ଲଭିବୁ ସୁଖ,
ହରିବୁ କୋଟିଏ ଜନ୍ମର ଦୁଃଖ । ୪ ।
ପ୍ରିୟାଙ୍କ ମନ ଜାଣି ବ୍ରଜସ୍ୱାମୀ,
ଡାକ ଦେଲେ ଶୂନ୍ୟ ମଣ୍ଡଳେ ରହି ।
ଯେଉଁ ରୂପ ଦେଖି ହୋଇଲ ମୋହ,
ସେହି ରୂପରେ ମନ ବୁଦ୍ଧି ଦିଅ ।
ପ୍ରିୟେ ଗୋ, ସେହି କୃପା କରିବେ,
ତାଙ୍କ ତେଜ ତୁମ୍ଭ ହୃଦେ ଭରିବେ । ୫ ।
ଯେବେ ତୁମ୍ଭ ହୃଦ ଦୃଢ଼ ହୋଇବ,
ମନ ନଚଳେ ଲୋଚନେ ରହିବ ।
ଦେଖିବ ତାଙ୍କ ସର୍ବସ୍ୱର ଲୀଳା,
ଯଉଁଠାରେ ଯେତେ ହୋଇବ ଖେଳା ।
ପ୍ରିୟେ ଗୋ ! ମନ ନିର୍ମସ୍ଥା କର,
ନିର୍ଭୟେ ହୋଇ ତାଙ୍କୁ ଚିତ୍ତେ ଧର । ୬ ।
ଶୁଣି ଶୂନ୍ୟରୁ ବାଣୀ ଗଜଗମା,
ଚଳିଲେ ମନେ ରାଧା ରୂପସୀମା ।
ନିର୍ଭୟେ ହୋଇଣ ଝାସି ପଶିଲେ,
ରାଧା-ରୂପ-ତେଜେ ଯାଇଁ ମିଳିଲେ ।
ଶ୍ୟାମ ହେ, ମନେ ବିଶ୍ୱାସ ହୋଇ,
ସେହି ତେଜ ହୃଦେ ପୂରେଇ ରହି । ୭ ।
ରୁକ୍ମିଣୀ ଆଦି ଅଷ୍ଟପାଟବଂଶୀ,
ଗରୁଡ଼ ପୃଷ୍ଠରେ ସମସ୍ତେ ବସି ।
ଗୁପତେ ଦେଖନ୍ତି ଉପରେ ଥାଇ,
ବୋଲନ୍ତି ରାଧିକା ଅଟନ୍ତି ଏହି ।
ସତେ ଗୋ, ଧନ୍ୟ ଧନ୍ୟ ମହିମା,
ଏମନ୍ତ ସେଟି ବୃଷଭାନୁ ଜେମା । ୮ ।

ଜମ୍ବୁନଦରୁ ଜମ୍ବୁନଦ ଆଣି,
ଶତପତ୍ର ତହିଁ ଦେଲା ଚାଳ୍ଣି ।
ଗାଲ ପକାଇ ଚାଳିଲା ରୂପ,
କଟାକ୍ଷ ବାଣେ ବନ୍ଧ କଲା ଦୃଢ ।
ସହେ ଗୋ, ଏହୁ ଉହାକେ ଆଇ,
ତାକୁ ଝଆଇଲା ଅମୃତ ଦେଇ । ୯ ।
କୋଟି କୋଟି ଚନ୍ଦ୍ର କଳଙ୍କ କାଢ଼ି,
ସୁଧା ସିନ୍ଧୁରେ ବୁଡ଼ାଇବା ମାଢ଼ି ।
କୋଟିଏ କଲେଂ କାଢ଼ି ସଙ୍ଗ ମେଦ,
କାମକୁଣ୍ଡରେ କୁନ୍ଦଥିବ ବଧି ।
ସହେ ଗୋ, ଚନ୍ଦ୍ର ଏରୂପେ କୋଟି,
ରାଧିକା ମୁଖଚନ୍ଦ୍ରକୁ ନ ଘଟି । ୧୦ ।
ଧନ୍ୟ ଏ କୁଟିଳ-କୁନ୍ତଳ-ଶୋଭା,
କାଞ୍ଚନମୂର୍ତ୍ତିକି ମର୍କତ-ପ୍ରଭା ।
ଧନ୍ୟ ଏ ଚଟୁଳ ପଟ ନିର୍ମଳା,
ଭ୍ରୂଲତା ଭଙ୍ଗିମା ନୟନ ଖେଳା ।
ସହେ ଗୋ, ଧନ୍ୟ ଶୋଭା ଏ କର୍ଣ୍ଣ,
ବନ୍ଧୁକ ପୁଷ୍ପ ପାଏ ଗଣ୍ଡ ବର୍ଣ୍ଣ । ୧୧ ।
ଧନ୍ୟ ଏ ଚବୁକ ଧନ୍ୟ ଏ ଓଷ୍ଠ,
ଅଧର କି ? ବିମ୍ବ ଅରୁଣ ନଷ୍ଟ ।
ଧନ୍ୟ ଏ ମୃଦୁହାସ ବଦନ ଶୋଭା,
ନାସିକାଦଣ୍ଡ ଝଟ ଝଟ ଆଭା ।
ସହେ ଗୋ, ଧନ୍ୟ ସୁମୃଦୁ ବାଣୀ,
କନ୍ଦର୍ପ ଥଇଲା ବୀଣାବାଜେଣୀ । ୧୨ ।
ଧନ୍ୟ ଏ ସୁନ୍ଦର ସାରଙ୍ଗ ଗଳା,
ଧନ୍ୟ ଏ କୁଚକୁମ୍ଭ ଘଷ୍ଟଶିଳା ।

ଧନ୍ୟ ଏ ଭୁଜପାଣି କୋକନଦ,
ଧନ୍ୟ ଏ ସୁନ୍ଦର ପଙ୍କଜ ପାଦ ।
ସହେ ଗୋ, ଧନ୍ୟ ନଖଚନ୍ଦ୍ରିକା,
ଚନ୍ଦ୍ର ପଣକନ୍ୟେ ହେଉଛି ଶିଖା । ୧୩ ।
ହଲଟ ରମ୍ଭା କ ଜଘନ ଯୁଗ,
ନତମ୍ବତଟ ସିଂହାସନ ନଙ୍ଗ ।
ଧନ୍ୟ ଏ ତ୍ରିବଳି ଲଳିତମଧ୍ୟା,
କାମ ଡମ୍ବରୁ କ ଏ ଦୁଇ ଅଧା ।
ସହେ ଗୋ, ଧନ୍ୟ ରଙ୍ଗପତଳୀ,
କୁଞ୍ଜ ପିନ୍ଧିଅଛି ରଙ୍ଗେ ସଜନୀ । ୧୪ ।
ଘଣ୍ଟି ଘାଗୁଡ଼ି ରହି ଓଢ଼ଆଣୀ,
କେତେଠାରେ କେତେ ରହି ଖଞ୍ଜିଣି ।
ବଦ ମୁଦ୍ରିକା ବଳୟ ବାହୁଟି,
ହାର ତାଟଙ୍କ ନାକଚଣା କଣ୍ଟି ।
ସହେ ଗୋ, ଏ ତ କାମ କାଛେଣୀ,
କାଛୁ ସଜ କଲ କଉଁ ରମଣୀ । ୧୫ ।
ଆଉ ପାଖେ ଅଛୁ ସେ ପରୁ ଦୂତୀ,
ଏହୁ ତ ସଖୀ ଶୋଭି ସେହମତି ।
ରାଧା ବଦଳେ ସୁଜାଣ ପଣକୁ,
ତେଣୁ ସେ ଦୂତୀ ବୋଲନ୍ତି ଏହାଙ୍କୁ ।
ସହେ ଗୋ, ଦୁଇ ପାଶରେ ଦୁଇ,
ଏକୁ ଆରେକ କୃଷ୍ଣମନ ମୋହି । ୧୬ ।
ଧନ୍ୟ ଏ ସୁନ୍ଦର ଦୁଇ ମୂରତି,
ଏବେ ସେ ଏହାଙ୍କ ମନ ଧିରତି ।
ଧନ୍ୟ ଏ ଆମ୍ଭର ଜୀବନ ସଖୀ,
ପ୍ରଭୁଙ୍କ ପ୍ରସାଦେ ଏ ସୁଖ ଦେଖି ।

ସହେ ଗୋ ଧନ୍ୟ ଗୋପିକା ବୃନ୍ଦ ।
କେସନେ ମୁରୁଛି ଥିଲେ ଗୋବନ୍ଦ । ୧୭ ।
ଧନ୍ୟ ଏ କଦମ୍ବ କଲପତରୁ,
କଲ୍ପକଲ୍ପାନ୍ତରେ ଅଟଳ ମେରୁ ।
ଗରୁଡ଼ ଖାସ ଏଥୁ ଅଛୁ ସନ୍ଧ,
ଯେଉଁ ଗରୁଡ଼ ଗରୁ କୋଟି ମନ୍ଦ ।
ସହେ ଗୋ, ଧନ୍ୟ କାଳନ୍ଦୀ ନଦୀ,
କଲେ କାମନା ହୋଇବ ସିଦ୍ଧି । ୧୮ ।
ଧନ୍ୟ ଏ କଲ୍ପଦ୍ରୁମ ସର୍ବଶୋଭା,
ରାଧା ଅଙ୍ଗ ତେଜ ସୁବର୍ଣ୍ଣ ଆଭା ।
ସର୍ବ ବୃକ୍ଷମୂଳେ କାଞ୍ଚନ ବେଢ଼,
ଅଷ୍ଟରତ୍ନମାନେ ଅଛନ୍ତି ଭେଦ ।
ସହେ ଗୋ, ଧନ୍ୟ ଏ ଫୁଲ ଫଳ,
କ୍ରୀଡ଼ନ୍ତି ଶୁକ ପିକ ଭୃଙ୍ଗ କୁଳ । ୧୯ ।
କାଳନ୍ଦୀ ଜଳ ଶୀତଳ ସୁଗନ୍ଧ,
ଯେଣୁ ପବନ ବହେ ମନ୍ଦ ମନ୍ଦ ।
ତରୁଣ ତମାଳ ଦଳ ତରଳେ,
କସ୍ତୁରୀ ଗନ୍ଧ କି ମର୍କତ ଦଳେ ।
ସହେ ଗୋ, ସର୍ବ ପୁଷ୍ପଙ୍କ ବାସ,
ବନ ବକୁଳ ବହେ ଦଶଦିଶ ।
ପୁଷ୍ପ-ତରୁବର-ପରାଗ ଖସେ,
କି ଏ ଋତେଶ ଅମ୍ବର ବରଷେ ।
ଘଞ୍ଚ ବନ୍ଦେଲ ସଞ୍ଚ ବୃକ୍ଷ ସାଜେ,
ଲତାଲିଙ୍ଗିତ କାନ୍ତ କାନ୍ତା ବଜେ ।
ସହେ ଗୋ, ଧନ୍ୟ ଧନ୍ୟ ଏ ବନ,
ତହୁଁ ଶୃଙ୍ଗାର ଯାଏ ଅଛୁ ସ୍ଥାନ । ୨୦ ।

*

କେତେଠାରେ କେତେ ଦେବତା ସ୍ଥାନ,
ଯୋଗୀ ତପସ୍ୱୀ ମୁନି ଧରେ ଧ୍ୟାନ !
ମେଢ଼ ମଣ୍ଡପ ଦେଉଳ ଅଟ୍ଟାଳି,
ମର୍କତ ମାଣିକ କାଞ୍ଚନେ ଢଳି ।
ସହେ ଗୋ, ସୁର ଗନ୍ଧର୍ବେ ଆସି,
ଗନ୍ଧର୍ବ ସଙ୍ଗେ ନୃତ୍ୟ ଗୀତ ଘୋଷି । ୧୨ ।

ଯହିଁ ବିହାର କରେ ଗୋପୀ କାହ୍ନ,
କିସ ପଟାନ୍ତର ଦେବା ସେ ସ୍ଥାନ ।
ଶୁଣୁଥିଲୁ ଯାହା ଦେଖିଲୁ ତାହା,
ତେବେ ବଡ଼ପଣ କହିବୁଁ କାହା ।
ସହେ ଗୋ, ଏତେ ବିଗୁଣ ଆଗ,
ଦାସୀପଣକୁ ନକ ନୋହୁ ଯୋଗ୍ୟ । ୧୩ ।

ଏବେ ଗୋ ସଖି ଏମନ୍ତ ବିଚାରି,
ନ ଯିବା ଆମ୍ଭେ ଦ୍ୱାରବତୀ ପୁରୀ ।
କେମନ୍ତେ ଆମ୍ଭଙ୍କୁ ରାଧା ଜାଣିମେ,
ତାଙ୍କ ପରିଜନ ସଙ୍ଗେ ଗଣିମେ ।
ସହେ ଗୋ, ତେବେ ଲଭିବା ଭାବ,
କୃପା କରିବେ ପ୍ରଭୁ ପଦ୍ମନାଭ । ୧୪ ।

ଦେଖ ଦେଖ ସଖି ଶ୍ରୀକୃଷ୍ଣ ରୂପ,
ଏ ରୂପ କାହିଁ କରିଥିଲେ ଗୋପ୍ୟ ।
ଏବେ ଧରିଲେ ନିଜ ରୂପ ସାର,
ରାଧା ରୂପକୁ ଏ ସମ ସୁନ୍ଦର ।
ସହେ ଗୋ, ଦେବ ନିର୍ଣ୍ଣୟ ଭଣି,
ଭିନ୍ନ ନୋହ ତୁମ୍ଭେ ରାଧା ରୁକ୍ମିଣୀ । ୧୫ ।

ଗାହା:—ଇତି ଶ୍ରୀ ରହସ୍ୟ-ମଞ୍ଜରୀ ସପ୍ତଦଶ ଛାନ୍ଦେ,
ରାଧିକା ଦର୍ଶନ ରୂପ ରୁଚିର ବନ୍ଧେ,
ଅଷ୍ଟାଦଶ ଛାନ୍ଦ ବର୍ଣ୍ଣନେ କେବଣ ଆନନ୍ଦ,
କହିବାକୁ ଆଜ୍ଞା ହୋଇ ଶ୍ରୀ ପରମାନନ୍ଦ । ୧୭ ।

---

## ଅଷ୍ଟାଦଶ ଛାନ୍ଦ ।

—:():—

ରାଗ—ବସନ୍ତବରାଡ଼ି ଗୀୟତେ ।

(ସଖି ଗୋ) ଦ୍ୱାରକା ଯୁବତୀ ମୋହି ହୋଉଛନ୍ତି
ରାଧାରୂପ-ଶୋଭା ଚାହିଁ,
ଏମନ୍ତେ ଦୃଷ୍ଟି ଫୁଲବନେ ପଡ଼ିଲା
ଗୋପୀ ଫୁଲ ତୋଳାଠାଇଁ ଗୋ ।
ଦେଖ ଦେଖ ସଖି ଏଥୁ ବୃନ୍ଦାବନେ
ବିହରନ୍ତି ଗୋପବାଳୀ,
ବିବିଧ ବର୍ଣ୍ଣେ ପୁଷ୍ପମାନ ତୋଳନ୍ତି
ନାନାରଙ୍ଗେ କୁରୁହଳୀ ଗୋ । ୧ ।
(ସଖି ଗୋ) ସହକେ ଗତି- ନୃତ୍ୟରଙ୍ଗେ ଚାଲନ୍ତି
ବିଚିତ୍ର ଭଙ୍ଗିମା ହୋଇ,
କଥା କହନ୍ତି ଗୀତସ୍ୱରେ ଆଳପି
ପୁଚ୍ଛନ୍ତେ ହସ୍ତକ ଦେଇ ଗୋ ।
ହସନ୍ତି ଖେଳନ୍ତି ରସନ୍ତି ମିଶନ୍ତି
ତୋଷନ୍ତି ଏକୁ ଆରକେ,
କୃଷ୍ଣକୁ ଭାବନ୍ତି, ବସନ୍ତେ ଗାବନ୍ତି
ମଦନ-ମନ-ଛନ୍ଦକେ ଗୋ । ୨ ।

(ସଖି ଗୋ) କେହୁ ବୃକ୍ଷେ ଉଠି କୁସୁମ ତୋଳନ୍ତ
ମୁଖ ପଦ୍ମଗନ୍ଧ ପାଇ,
ପୁଷ୍ପ ତେଜ ଭୃଙ୍ଗ ବଦନ ଚୁମ୍ବନ୍ତେ
ବୃକ୍ଷରୁ ପଡ଼ନ୍ତି ଡେଇଁ ଗୋ ।
ପଳାନ୍ତେ ଗୋଡ଼ାନ୍ତ ଚୁମ୍ବନ୍ତେ ଛଡ଼ାନ୍ତ,
ଛଡ଼ାନ୍ତେ ପଶନ୍ତ ବାସେ,
କେଶ ବସନ ଦୂରେ ଫେଡ଼ି ଝାଡ଼ନ୍ତେ
ଦୂରେ ସଖୀଜନ ହସେ ଗୋ । ୩ ।
(ସଖି ଗୋ) କୋଟି କୋଟି ଚନ୍ଦ୍ର ଉଦେ କି ହୋଇଛୁ
ଉଜ୍ଜ୍ୱଳ ଏ ବୃନ୍ଦାବନ,
ମୁଖଚନ୍ଦ୍ର ଜ୍ୟୋତ ରସାଣିଲ କ୍ଷିତ
ସ୍ଫଟିକ ପୀଡ ଯେସନ ଗୋ ।
ଗୋଟି ଗୋଟି ହୋଇ ବାଣ ଦଶୁଛନ୍ତ
ଯାହାର ଯେମନ୍ତ ବର୍ଣ୍ଣ
ଫୁଲ ଫଳ ତରୁ ଲତା ଖଗ ମୃଗ
ସର୍ବ ଦ୍ରବ୍ୟ ରୂପ ଚହ୍ନ ଗୋ । ୪ ।
( ସଖି ଗୋ) ଗୋପୀ ଅଭିରଙ୍ଗୀ କେତେ ଜାଣେ ଭଙ୍ଗି
ଛବ ଛଟକକୁ ଦେଖ,
ସ୍ନିଗ୍ଧିକା ସ୍ବରୂପ କନ୍ଦର୍ପ କରୂପ
ପୁରୁଷ ହୃଦକୁ ଯୋଖି ଗୋ ।
ଦେଖ ଦେଖ ସଖି ଗ୍ଯହାଣୀ ତେରଛ-
ବାଣେ ପାଷାଣ ତରଳବ,
କାଷ୍ଠ-ପ୍ରତମା ଭେଦ କାନ୍ଦ ଉଠିବ
ମଦନ ସରେ ମଜ୍ଜିବ ଗୋ । ୫ ।
(ସଖି ଗୋ) ବାରୁ ! ଏ ସଖୀ ଶ୍ରୀକୃଷ୍ଣ ବନୁ ଦୁଃଖୀ
ରୂପେ ପଟାନ୍ତର ନାହିଁ,

ଏହାଙ୍କ ରୂପ ଗୁଣ କହୁ ଲୋଡ଼ିଲେ
ଧଇର୍ଯ୍ୟ ରହିବ କାହିଁ ଗୋ ।
ପୁରୁଷ ହୋଇ କେ ହୃଦୟ ଧରିବ
ନାରୀ କି ନାରୀ ନ ମୂର୍ଚ୍ଛି,
କୋଟିଏ ବ୍ରହ୍ମାଣ୍ଡେ ଗୋଟିଏ ଏରୂପେ
ଖୋଜିଗଲେ କାହିଁ ଅଛୁ ଗୋ । ୬ ।
(ସଖି ଗୋ) ବଚିତ୍ର ଗନ୍ଧ ଆଢ଼- ଚନ୍ଦ ମାରିଣ
ବୃକ୍ଷରେ ବସନ୍ତ ଡେଇଁ,
ବିବିଧ ପୁଷ୍ପ ନାନା ରଙ୍ଗେ ଡୋଳନ୍ତ
ଗୋବିନ୍ଦର ଗୀତ ଗାଇ ଗୋ ।
ରଙ୍ଗଣୀ ଚୂତ— ଅଙ୍କୁର ଅରବିନ୍ଦ
ନଗନ୍ଧ କୁନ୍ଦ ପୁନ୍ନାଗ,
ଜାତି ଯୁଥୀ ମଲ୍ଲୀ ମୁହୂର୍ତ୍ତା ମାଳତୀ ସେବତୀ
ଧାତ୍ରୁକୀ ମୃଦୁ ଲବଙ୍ଗ ଗୋ । ୭ ।
(ସଖି ଗୋ ଟଗର, ତଗ୍ରଟ ପାଟଳୀ, ପଳାଶ,
କଦମ୍ବ, ରଙ୍ଗବଧୁଲ,
ଚମ୍ପା, ନାଗେଶ୍ୱର, ମଦନା, ମାଧବୀ
ସୁଖଭଦ୍ରା ଲଜ୍ଜାକୁଳୀ ଗୋ ।
ଦାରେହାଦାଢ଼ କରୁଣା କୋକନଦ
କୁରୁବକ ମୁଚକୁନ୍ଦ,
ମୃଦୁ ଶିରୀଷ କଞ୍ଚନ କୁରୁବେଲୀ
ରଙ୍ଗ ଦୂଲଲ କୁମୁଦ ଗୋ । ୮ ।
(ସଖି ଗୋ) ଗଙ୍ଗଶିଉଳ ସୁରଙ୍ଗ ଅରବିନ୍ଦ
ସୁନାରୀ, ପାରିଜାତକ,
ନୀଳ-ଉତ୍ପଳ, ମନ୍ଦାର କର୍ଣ୍ଣିକାର
ସୁଗନ୍ଧ ମଲ୍ଲି ଅଶୋକ ଗୋ ।

ଶତବର୍ଗ ଛୁରଅନା ରଙ୍ଗ ମଲ୍ଲି,
ମୃଦୁଲା ଏ ଚନ୍ଦ୍ରବମ୍ପା,
ଅପରାଜିତା ବଉଳ- ବୃନ୍ଦ ତାର-
ଝଲକ ଏ ମଧୁ ସ୍ରବା ଗୋ । ୯ ।
(ସଖି ଗୋ) ଦମ୍ଭଣା, ତୁଳସୀ ମାଧବୀ ମରୁଆ
କୁଟିଳା କାମଦାୟିନୀ,
ଏରୂପେ ନାନା ପୁଷ୍ପ ତୋଳି ଆସନ୍ତି
ଆନନ୍ଦେ ଗୋପକାମିନୀ ଗୋ ।
ଶ୍ରୀକୃଷ୍ଣ ପାଇଁ ସୁଗନ୍ଧ ପୁଷ୍ପ ବାଛି
ବସି ଗୁନ୍ଥିଲେ ସୁନ୍ଦରୀ,
ଶ୍ୱେତ ରକ୍ତ ନୀଳ ପୀତ ବର୍ଣ ବର୍ଣ
ବୈଜୟନ୍ତୀ ମାଳା କରି ଗୋ । ୧୦ ।
(ସଖି ଗୋ) ଅତି ଯତ୍ନ କରି ଥୋକାଏ ଗୁନ୍ଥିଲେ
ରାଧିକା ଦୂତିକା ପାଇଁ,
ଅଧିଷ୍ଠାତ୍ରୀ ଗୋପୀ- ମାନଙ୍କୁ ଥୋକାଏ
ଗୁନ୍ଥି ସଜାଡ଼ିଲେ ସବୁ ଗୋ
ଆପଣା ଅର୍ଥେଣ ଥୋକାଏ ଗୁନ୍ଥିଣ
ସୁବେଶ ହୋଇଲେ ବେଗେ,
ଗନ୍ଧ ଚନ୍ଦନ କର୍ପୂର ମୃଗମଦ
ସାମଲଲେ ସର୍ବଅଙ୍ଗେ ଗୋ । ୧୧ ।
(ସଖି ଗୋ) ଗନ୍ଧ ପୁଷ୍ପ ଘେନି କବରୀ ରଚିଲେ
ବେଢ଼ି କେତକୀ ପାଖୁଡ଼ା,
ନିର୍ମଳ କପୋଳେ ମନୋଜ ରଞ୍ଜିଲେ ଅଳକା
ବକ ମଲ୍ଲିକହୀ ଝଡ଼ା ଗୋ,
ବଦନଚନ୍ଦ୍ର ଉପରେ ଶୋଭା କଏ
ବେଢ଼ି ଘନତମ ତାର,

କୈରବ ଶ୍ରେଣୀ ବେଣୀମାନେ ମଣ୍ଡିଲେ
ମଦନ-ମନ-ବିକାଶ ଗୋ । ୧୨ ।
(ସଖି ଗୋ) ନବ ବିକଚ ଅବତଂସ ଅଶୋକେ
କେ ଖଞ୍ଜେ ପଦ୍ମ ଚମ୍ପକ,
କୁରୁବକ-କଢ଼ୀ ନାଶାରେ ଖଞ୍ଜିଲେ
କର୍ଣ୍ଣେ କର୍ଣ୍ଣିକାର କାପ ଗୋ,
କଣ୍ଠେ ଖଞ୍ଜିଲେ ହାର ମଲ୍ଲି ମାଧବୀ
ନବୀନ-କଳିକା ଗୁନ୍ଥି,
ନାଗେଶ୍ୱର ପୁଷ୍ପେ ମେଖଳା ସାଜିଲେ
ଯେମନ୍ତେ ମୋହିବେ ପତି ଗୋ । ୧୩ ।
(ସଖି ଗୋ) ନାନା କୁସୁମେ ତାଡ଼ ଚୂଡ଼ୀ ସାଜିଲେ
ଭୁଜଲତାକୁ ବନାଇ,
ବିଚିତ୍ର ପୁଷ୍ପଦ୍ରୁମ ପ୍ରାଏ ଦିଶିଲେ
ସମସ୍ତେ ହିଅ ଅନାଇ ଗୋ,
ମଦନଶର— କିରଣମାନ କି ଏ
ସମରେ ଅଛନ୍ତି ସାଜି ?
ପୁଷ୍ପ ଲତାରେ କି କୋକିଳ କଣ୍ଠରୁ
ବାଣୀ ଶୁଣି ମନ ମଜ୍ଜି ଗୋ । ୧୪ ।
(ସଖି ଗୋ) ଧନ୍ୟ ଏ ଗୋପୀ ବିଚିତ୍ର ବହୁରୂପୀ
ଆମ୍ଭ ଜୀବନ ହିଁ ଧନ୍ୟ,
କେତେ କାଳ ବସି କେତେ ତପକଲୁଁ,
ଦେଖିଲୁଁ ଚମ୍ପକସ୍ଥଳ ଗୋ ।
ପାଷାଣ ପ୍ରତିମା ଦେଖିଲେ କାନ୍ଦିବ
ଏହାଙ୍କ ବିଚିତ୍ର ଭ୍ରାନ୍ତି,
ଏ ଭାବ ଗୁଣିକି ପ୍ରଭୁ ନ କାନ୍ଦିବେ
ଏକେ ସେ ଭାବମୂରତି ଗୋ । ୧୫ ।

(ସଖି ଗୋ) ଦିବ୍ୟ ସୁବେଶ ହୋଇ ସର୍ବ ଗୋପିନୀ
ପ୍ରବେଶ ହୋଇଲେ ଯାଇ
ଯେ ଯାହା ନାୟିକା- ମାନଙ୍କୁ ମଣ୍ଡିଲେ
ବିବିଧ କୁସୁମ ଦେଇ ଗୋ ।
ରାଧିକା ଦୂତିକା ଏ ଦୁଇ ସଖୀଙ୍କି
ସମସ୍ତେ ସୁବେଶ କରି,
ସୁଶୀତଳ ଜଳେ ଚତୁଃସମ ଗୋଳି
ଶ୍ରୀଅଙ୍ଗେ ବୋଳିଲେ ବାଳୀ ଗୋ । ୧୬ ।
(ସଖି ଗୋ) ହାର ତାଡ଼ ଚୂଡ଼ୀ ମୁଦ୍ରିକା ମେଖଳା
ତାଟଙ୍କ ନାସାବସଣୀ,
ଅଳକା ଅବତଂସ କେଶ ମଣ୍ଡିଲେ
କୁସୁମେ ହେଁ ତରୁଣୀ ଗୋ ।
ନୂପୁର ବରଚରଣେ ଖଞ୍ଜି ବାଳୀ
ପ୍ରଣମ୍ୟ ହୋଇ ଶୋଇଲେ,
ତୁମ୍ଭ କୃପାରୁ ପ୍ରଭୁସବ ଲଭିବୁଁ
ଶ୍ରୀ ଆଜ୍ଞା ହୋଉ ବୋଇଲେ । ୧୭ ।
(ସଖି ଗୋ) ହସି ରାଧିକା ସଖୀଙ୍କି ଠାରି ଦେଲେ
ସଖୀହସି କୋଳ ଦେଇ,
ଏମନ୍ତ କମ୍ପା କହ ପ୍ରାଣସଜନି
ତୁମ୍ଭେ ତାଙ୍କ ନିଜ ଦେହୀ ଗୋ ।
ପ୍ରଭୁଙ୍କ ନିମନ୍ତେ କି ପୁଷ୍ପ ଆଣିଛ
ଆଣ ସୁବେଶ କରିବା,
ସବୁ ଦେଇ ମାଳେ ମାଳେ ଗୋପ୍ୟ କଲେ
ସ୍ୱହସ୍ତେ କରିବେ ସେବା । ୧୮ ।
(ସଖି ଗୋ) ବାମ ଦକ୍ଷିଣେ ରହି ବେନି କିଶୋରୀ,
ସାଜିଲେ କିଶୋରମୂର୍ତ୍ତି,

ବିବିଧ କୁସୁମ ଶ୍ରୀଅଙ୍ଗେ ମଣ୍ଡିଲେ
ବେଢ଼ି ସକଳ ଯୁବତୀ ଗୋ ।
ମାଲାମାନ ଧରି ଉଷ୍ଣର ଗନ୍ଧିଲେ
ଶ୍ରୀକୃଷ୍ଣ ସ୍କନ୍ଧିବା ପାଇଁ
ହସି ସ୍କନ୍ଧାନ୍ତେ ସମସ୍ତେ ମାଳ ଦେଲେ
ଶ୍ରୀହରି ହୃଦେ ଲମ୍ବାଇ ଗୋ । ୧୯ ।
ଏମନ୍ତେ କେତେ କେତେ ରଙ୍ଗେ ଯୁବତୀ
ମୋହିଲେ ଦିବ୍ୟ ମୂରତି,
ବିବିଧ ବିନୋଦ ହାସ ପରିହାସ
ଯାହାର ଯେମନ୍ତ ଖ୍ୟାତି ଗୋ,
ଶ୍ରୀ ଗୋପୀନାଥଙ୍କ ମହିମା ଦୁର୍ଲଭ
ପ୍ରେମିକଙ୍କୁ ପ୍ରେମରଙ୍କ,
ମହାରସେ ପଶି ଦେବ ହସିଗଲ,
ଯେ ଅବା ଯେମନ୍ତ ବୁଝୁ ଗୋ । ୨୦ ।
(ଗାହା) ଇତି ଶ୍ରୀ ରହସ୍ୟମଞ୍ଜରୀ ଅଷ୍ଟାଦଶ ଛନ୍ଦେ,
ଗୋପିକା ନିକର ଫଲ ବିନୋଦ ବନ୍ଧେ,
ଉନବିଂଶ ଛନ୍ଦ ବର୍ଣ୍ଣନେ କେବଣ ରଙ୍ଗ,
କହିବାକୁ ଆଜ୍ଞା ହୋଉ ଏଥିର ପ୍ରସଙ୍ଗ । ୧୮ ।

—):o:(—

## ଉନବିଂଶ ଛାନ୍ଦ ।

:-★-:

ମହ୍ଲାର ରାଗେଣ ଗୀୟତେ ।

କେଳି କଳାନିଧି କଦମ୍ବମୂଳେ
ଗୋପ କଦମ୍ବ ନିତମ୍ବିନୀ ମେଳେ । ୦ ।
ରଞ୍ଜିଲେକ ରାସମଣ୍ଡଳୀ ଲୀଳା,
ବାଦ୍ୟ ବିନୋଦେ ନୃତ୍ୟରଙ୍ଗେ ଖେଳା ।

ନଟବର ନାଗର ମଧ୍ୟେ ବିରାଜେ,
ମୋହନ ବଂଶୀ ବିମ୍ବାଧରେ ବାଜେ । ୧ ।

ଓଙ୍କାର ଆଳପି ରାଗ ସଞ୍ଚାରେ,
ତେ ତେନାତେନାତେ ତାନ ଉଚ୍ଚାରେ ।
ତାନ ଭେଦ ତାଳ କପୋଳେ ଦଏ,
ସଙ୍ଗୀତ ସ୍ୱରରେ ଗୋପିକା ଗାଏ । ୨ ।

କାମକ ଛତଣ ସହସ୍ର ଲକ୍ଷେ,
ତନ୍ତ୍ରୀକ ଲକ୍ଷକ ସହସ୍ର ବଂଶେ,
ଅଠାଶି ସହସ୍ର ଫୁତ୍କାର ସାଜେ,
ବାଉଳି ସହସ୍ର ଚମ୍ପକ ବାଜେ । ୩ ।

ଧେଁକ୍ ଧେଁକ୍ ଥେଇ ଥେଇ ଦୁନ୍ଦୁଭି ଗାଜେ,
ଝିଙ୍ଗିଡ଼ି ଗିଡ଼ି ଗଡ଼ି ଥେଇ ଥେଇ ସାଜେ ।
ଝେଁ ଝଙ୍କ୍ ଝଙ୍କ ଝଙ୍କ ଝଞ୍ଜାଳ ଝାଙ୍କେ,
ଝେଁଗୁଣା ଝିଣା ଝଣା ଗୁଞ୍ଜିତ ଗୁଣାଙ୍କେ । ୪ ।

ଝମକ ଝମକ ତାଳେ ଝମକେ,
କଙ୍କିଣୀ ରୁଣ ଝଣ ଚଉ ଚମକେ ।
ଠଣ ରଣ ଘର୍ ଘଣ୍ଟ ଘଣ୍ଟୀରେ ନାଦେ,
ମୁଖରିତ ମଞ୍ଜୀର ପାଦେ ବିବାଦେ । ୫ ।

ଭେରୀ ମୃଦଙ୍ଗ ନାନା ବାଦ୍ୟ ନାଦେ,
ବ୍ରହ୍ମାଣ୍ଡ ପୂରି ବ୍ରହ୍ମଲୋକ ଭେଦେ ।
ଭୂମି ଭେଦ ତାଳ ପାତାଳେ ପଶେ,
କଣ୍ଠ ମେଳ ବାଦ୍ୟ ପଞ୍ଚମ ରସେ । ୬ ।

କୃଷ୍ଣେଲ ଭ୍ରମର ସହସ୍ରେ ପଡ଼େ,
ଚନ୍ଦ୍ରଉଦଆ ଦାଉ ଦାଉ ଝଡ଼େ ।

ପୁଷ୍ପର ଆଲଟ ସହସ୍ରେ ଟାଳ,
ସହସ୍ରେ ଫୁଲ ଛତ୍ର ଧରେ ଭୋଳ । ୭ ।

ସହସ୍ରେ ଦର୍ପଣ ସମ୍ମୁଖରେ ଧରେ,
ମୁଖେ ମଧୁପାତ୍ର ତାମ୍ବୁଲ କରେ,
ଚନ୍ଦନ ମୁଦା କାହା କରେ ଶୋହେ,
ବିବିଧ ବନ୍ଧେ କୃଷ୍ଣମନ ମୋହେ । ୮ ।

ଗାବନ୍ତି ବାବନ୍ତି ନୃତ୍ୟନ୍ତି ବାଳା,
ଉନ୍ମଦ ମଦନ-ଶରେ ବେଭୋଳା,
ଗତି ଭ୍ରାନ୍ତି ସୁରୁଷ ମାଧୁରୀ ସାଜେ,
ସ୍ମର ଘୋର ଯୁଦ୍ଧ ଗାରମା ଗାଜେ । ୯ ।

ଝଲମଲ ଝଟକିତ ତାଟଙ୍କ ଗଣ୍ଡେ,
ବିଦ୍ୟୁତଖେଳା କି ଜୀମୂତ ମଣ୍ଡେ,
ରଙ୍ଗିମା ଅଧରେ ଭଙ୍ଗିମା ଗୀତ,
ଲୋଚନ ବଙ୍କେ କୃଷ୍ଣମୁଖ ଚାହେଁ । ୧୦ ।

ହେରି ଶ୍ରୀହରି ମୁଖ ପୂର୍ଣ୍ଣଇନ୍ଦୁ,
ଉଛୁଳି ଉଠେ ଗୋପୀ ପ୍ରେମସିନ୍ଧୁ,
କାଞ୍ଚୀଦାମ ତୁଟି କାଞ୍ଚଳି ଖସେ,
ଯୌବନ ହେରାଇ ତାଙ୍କନ୍ତି ବାସେ । ୧୧ ।

ପୁଣି ଖସଇ ପୁଣି ପୁଣି ଚାଙ୍କି,
ଯେମନ୍ତେ ଯୌବନ ଦଶେ ହରିଙ୍କି,
କୃଷ୍ଣଙ୍କୁ ନ ଚାହିଁ ସଖୀଙ୍କି ଚାହେଁ,
ଗୀତ ଭିତରେ ଅନୁଆନ କହେ । ୧୨ ।

ଚିବୁକ ଧରି ସଖୀମୁଖ ଚୁମ୍ବେ,
ନିବିଡ଼ ଗାଢ଼ କରି ପରିରମ୍ଭେ ।

କେହୁ କଟମ୍ବୁତଟେ କର ଭରେ,
ବାସ ନୀବୀବନ୍ଧ ସଶିଳ କରେ । ୧୩ ।
କାହାର କାଞ୍ଚଲୀ କେ ହିର୍କି ନଏ,
ଯୌବନେ ଯୌବନ ହାବୋଡ଼ି ଦଏ ।
ନବଢ଼ ଆଲଙ୍ଗନେ ଭିଡ଼େ ହସ୍ତ,
କମ୍ପାଇ ଯୌବନ ଜଘନଦେହା । ୧୪ ।

ବାଞ୍ଛନ୍ତି ନାଗ୍ରୀ ହରି ପରରମ୍ଭେ
ଜୀବନ ଯୌବନ ନ ରହେ ଦମ୍ଭେ ।
ଜର୍ଜରିତ ହୋଇ ଘୂର୍ମ୍ଣି ରହେ,
ଲୋଚନ ଭେଦ କୃଷ୍ଣମୁଖ ଧ୍ୟାଏ । ୧୫ ।

ନୃତ୍ୟ ଗୀତ ଅନ୍ତ ଦେଖି ମୁରାରି,
ଜାଣିଲେ ମଦନେ ଉନ୍ମତ୍ତ ନାରୀ ।
ଗୋପୀ ଗୋଟିକେ କୃଷ୍ଣ ଗୋଟିଏକ
ଏ କରୁ ମୂର୍ତ୍ତି ହୋଇଲେ ଅନେକ । ୧୬ ।

ରାଧା ଚନ୍ଦ୍ରାବଳୀ ପାଶୁରେ ଦୁଇ,
ତାଙ୍କ ମଧ୍ୟରେ ଆଦ୍ୟ ରୂପ ରହି ।
ଯେତେକ ଗୋପୀ ତେତେ କୃଷ୍ଣ ବ୍ୟାପି
ଠାବେ ଠାବେ ଲୀଳା ଅନନ୍ତରୂପୀ । ୧୭ ।

ବାହ୍ୟଧବନେ ପରରମ୍ଭ ଲୀଳା,
ଶୃଙ୍ଗାରରସେ ଗୋପୀ କୃଷ୍ଣ ଖେଳା ।
ଏକ ନ ଜାଣନ୍ତି ଆରେକ ଭେଦ,
ମୋ ବିନୁ କୃଷ୍ଣ ଆନ ନାହିଁ ଖେଦ । ୧୮ ।

ଅଷ୍ଟକମଳ ଅଷ୍ଟ ମଧ୍ୟଦଳେ,
କାଳୀର ଅଙ୍ଗ ହିଦଳତା କୁଳେ ।

ଚନ୍ଦନ ଗୁଲ୍ମ କୁସୁମ କାନନେ
ସକଳ ଗୋପୀ ଘେନି କେଳି କାହ୍ନେ । ୧୯ ।

ପଦ୍ମ ଦୁଇଦଳେ କୁଞ୍ଜ-କୁଟୀରେ
ରାଧା କୃଷ୍ଣ ଅଗ୍ନି କୋଣେ ବିହରେ ।
ଜାଣି ଚତୁର ନିରୋଧିଲ ସଙ୍ଗ
ନୃପନନ୍ଦନଙ୍କ ଦୃଷ୍ଟି ନିରୋଧି । ୨୦ ।

ରାସ ଅଶେଷ ଅଭିଳାଷ ଲୀଳା,
ଏଥି ଭିତରେ କେତେ ଯୁଗ ଗଲା ।
ଗୋଟିଏ ଗୋଟିକେ ବୋଧ କରାଇ,
ଅନେକ କୃଷ୍ଣ ଏକ ମୂର୍ତ୍ତି ହୋଇ । ୨୧ ।

ଈଶଚରିତ ଏ ବିବିଧ ଭାବ,
ଯାହା ନ ଜାଣେ ଧାତାନନ୍ତ ଶିବ ।
ମୋ ଛାର ପାମର କିସ କହିବ,
ପିମ୍ପୁଡ଼ି ହୋଇ କି ସିନ୍ଧୁ ପିଇବ । ୨୨ ।

ନିକୃଷ୍ଟ ଜନ ମୋର କାଯ ବୁଦ୍ଧି
ସନ୍ତୁଁ କୃପା କଲେ କରୁଣାନିଧି ।
ତେଣୁ ସନ୍ଥଜନେ କହିଲି ଏତେ,
ବୋଲଇ ଦେବ ଶକ୍ତି ମୋର କେତେ । ୨୩ ।

( ଗାହା ) ଇତି ଶ୍ରୀ ରହସ୍ୟମଞ୍ଜରୀ ହରିବଂଶ ଗ୍ରନ୍ଥେ,
ବିବିଧ ବିନୋଦ ବିଳାପ କୀର୍ତ୍ତି ବନ୍ଧେ
ବଂଶ ଗ୍ରନ୍ଥ ବର୍ଣ୍ଣିନେ କେବଣ ସନ୍ତୋଷ
କହିବାକୁ ଆଜ୍ଞା ହୋଇ ଏଥିର ନିର୍ଦ୍ଦେଶ ।



## ବଂଶ ଛାନ୍ଦ



ରାଗ ଭୈରବ—ଅଜବଲାପ ବାଣୀରେ ଗାଇବ ।

ଗୀପ ରହସ୍ୟ ଅନ୍ତରେ କଥା
ଶୁଣି ରସିକ ରସପଣ୍ଡିତା,
ନୀପତରୁମୂଳେ ବଜେ ଗୋପୀନାଥ,
ବ୍ରଜବନ୍ଧୁ ବୃଷଭାନୁସୁତା; ହେ ସୁଜନେ । ୧ ।

ରାଧା ପଦ୍ମହସ୍ତେ ନାଗବଲ୍ଲୀ,
ଦୂତୀ କରେ ଶୋହେ ରତ୍ନ ଝରି,
ତାମ୍ବୁଲ ଭୁଞ୍ଜାଇ ମୁଖ ପଖାଳନ୍ତି,
ବେନି ପାରୁଶେ ବେନି ସୁନ୍ଦରୀ; ହେ ସୁଜନେ । ୨ ।

ବେଢ଼ି ସେବନ୍ତି ବ୍ରଜବାଳୀ,
କରେ କୁବେଳି ଚାମର ଢାଳି,
ପୁଷ୍କର ବାଞ୍ଛଣି ଧରି କେ ବାଞ୍ଛନ୍ତି,
କେହୁ ଫୁଲ ଛଡ଼ୀ ଧରେ ତୋଳି; ହେ ସୁଜନେ । ୩ ।

ରାଧା ଚିବୁକ ଧରି ମୁରାରି,
କହନ୍ତି ବୋଲନ୍ତି ଶୁଣ ସୁନ୍ଦରି,
ଏବେ ତ ତୁମ୍ଭ ଆମ୍ଭ ମନ ପୂରିଲା,
ଆମ୍ଭେ ଯାଉଛୁ ଦ୍ୱାରକା ପୁରୀ; ଗୋ ସୁନ୍ଦରି । ୪ ।

ଆଉ ଅଳପ ଦିନର କଥା,
ମର୍ତ୍ତ୍ୟପୁରରେ କି ଥିବା ସର୍ବଥା,
ଦନୁଜ ବିନାଶି ନିଜ ପୁରେ ଯିବା,
ବେଗେ ଉଶ୍ୱାସି ଅବନୀ ବ୍ୟଥା; ଗୋ ସୁନ୍ଦରି । ୫ ।

ତୁମ୍ଭେ କହୁଥିଲ ଏଥେ ଥାଅ,
ମୋତେ ନ ଦେଖି ବ୍ୟଥା ନ ପାଅ,
ଅନ୍ତରରେ ମୋର ତୁମ୍ଭ ତହିଁ ମନ,
ମୋତେ ଦ୍ୱାରକାକୁ ଆଣିଯା ଦିଅ; ଗୋ ସୁନ୍ଦର । ୬ ।

ଏଣୁ ବିରହ ବଂଶୀଟି ନିଅ,
ଗୋପେ ଗୋପକୃଷ୍ଣ ହସ୍ତେ ଦିଅ,
ବଂଶୀ ଥିଲେ ଆମ୍ଭେ ତୁମ୍ଭ ହସ୍ତେ ଅଛୁ,
ବଂଶୀ ତୁମ୍ଭ ଆମ୍ଭ ସଖୀ ସନ୍ଧି; ଗୋ ସୁନ୍ଦର । ୭ ।

ଆଉ କଥା ଏ ଶୁଣ ସୁନ୍ଦର,
ଯାହା ପଢ଼ିଲା ଦ୍ୱାରକାପୁରୀ,
ଅନ୍ତରରେ ତୁମ୍ଭ ଗୁଣ ଗୁଣି ଗୁଣି,
ଆମ୍ଭ ଝଡ଼ିଗଲା ନିଜ ଶିଙ୍ଘ; ଗୋ ସୁନ୍ଦରୀ । ୮ ।

ସବୁ ସୁଖମାନ କଲୁ ତେଜ୍ୟା,
ଦିବ୍ୟ ପଲଙ୍କ ସୁପାତି ଶଯ୍ୟା,
ନଗ୍ର ନରନାରୀ ସମସ୍ତେ ଚକିତ,
କଥା ବାଜିଲା ରାଜା ପରଜା; ଗୋ ସୁନ୍ଦର । ୯ ।

କେହୁ ପଚାରି ତ ଶକ୍ୟ ନାହିଁ,
ଏହିମତେ କେତେ ଗଲା ବହି,
ସମସ୍ତେ ହୋଇ ରୁକ୍ମିଣୀଙ୍କି ପେଷିଲେ,
କଥା ଚିହ୍ନିବା ପାଇବାପାଇଁ; ଗୋ ସୁନ୍ଦରୀ । ୧୦ ।

ନାନା ଉପାୟେ ପ୍ରକାରେ ଦେବୀ,
ବଳେ ପେଲି ପଣି ପାଦେ ସେବି,
'ବହୁତ କ୍ରୋଧ କରି ବାମା ବୋଇଲେ,
ନ କହିଲେ ଆଜ ମୁଁ ମରିବି ହେ ଗୋବିନ୍ଦ; ୧୧ ।

ବାଳୀ ମୂର୍ଚ୍ଛାବ୍ରତ କଲେ ଯେଣୁ,
ତାଙ୍କୁ ନ କହୁ କହିଲୁ ତେଣୁ,
ବୋଇଲୁ ଅମ୍ଭେ ଏତେ ସର ହୋଇଲୁଁ,
ବ୍ରଜନାଥ ଗୁଣ ଗୁଣୁ ଗୁଣୁ; ଗୋ ସୁନ୍ଦର । ୧୨ ।

ଶୁଣି ସ୍ତମ୍ଭୀଭୂତ ହୋଇ ବାଳୀ,
ସମସ୍ତେ ହେଁ ହୋଇ କଲେ ମେଳ,
ଅମ୍ଭେ ସେ ଏତେ ଅସୁନ୍ଦର ହୋଇଲୁଁ,
ଏକା ସୁନ୍ଦର ଗୋପପୁଆଳୀ; ହେ ଗୋବିନ୍ଦ । ୧୩ ।

ତୁମ୍ଭ ରୂପଗୁଣ ଉପଲକ୍ଷି,
ତାଙ୍କୁ ଛଳଣ କହିଲୁଁ ସଖି,
ଶୁଣି ସମସ୍ତେ ସର୍ବସୁଖ ତେଜିଲେ,
ବସି ଶ୍ରବନ୍ତ ଯେହ୍ନେ ନିର୍ମାଖୀ; ଗୋ ସୁନ୍ଦର । ୧୪ ।

ଏଥୁଁ ଅନ୍ତରେ ଗାଏଣୀ ଅଛି,
ତୁମ୍ଭ ଗୁଣ ଗାଇଲେ ବଶେଷି,
ତାଙ୍କ ତଣ୍ଡୁଁ ଶୁଣି ପରତେ ପାଇଲେ,
ମୋହେ ଢଳିଲେ ସର୍ବସୁକେଶୀ; ଗୋ ସୁନ୍ଦର ।୧୫ ।

ତହୁଁ ବହୁତ ବିନତ ହୋଇ,
ଆମ୍ଭ ଛାମୁରେ ସର୍ବ ଜଣାଇ,
ବୋଇଲେ ଆମ୍ଭଙ୍କୁ ଅନୁଗ୍ରହ କର,
ତାଙ୍କ ଶ୍ରୀମୁଖ ବାରେ ଦେଖାଇ; ହେ ଗୋବିନ୍ଦ । ୧୬ ।

ତାଙ୍କ ସାତ୍ତ୍ୱିକ୍ୟ ଶରଧା ଶୁଣି,
ଆମ୍ଭେ ଘେନ ଆସିଅଛୁ ପୁଣି,
ମନ ଜାଣି ତାଙ୍କୁ ଅନୁଗ୍ରହ କର,
ତୁମ୍ଭେ ପ୍ରସନ୍ନ ହୁଅ ତରୁଣୀ; ଗୋ ସୁନ୍ଦର । ୧୭ ।

ରାଧା ବୋଇଲେ ସେ କାହିଁ ଛନ୍ତି,
ପ୍ରଭୁ ବୋଇଲେ ଗଗନଗତି,
ଏକ ସଙ୍ଗ ହୋଇ ସମସ୍ତେ ଅଇଲୁ,
ବନ୍ଧୁ ଅଣିଲ ଏ ଖଗପତେ ଗୋ ସୁନ୍ଦରି । ୧୮ ।

ଶୁଣି ସମସ୍ତେ ଚକିତ ହୋଇ,
ବାଳୀ ଗଗନକୁ ଦେଲେ ଚାହିଁ ।
ଜାଣି ଗରୁଡ଼ ଭୂଇଁ ଆସି ବସିଣ,
ରାଧା ଶ୍ରୀଚରଣେ ପ୍ରଣମିଲେ ସେ ଗରୁଡ଼ । ୧୯ ।

ବାମା ଓହ୍ଲାଇ ପଡ଼ି ପୃଷ୍ଠରୁ,
ଦଣ୍ଡପାଇ ପ୍ରଣମିଲେ ଦୂରୁ,
ଖଗପତି ପିଠି ଆଉଁଶି ରାଧିକା,
ତାକୁ ବୋଇଲେ ତୁ ମହାମେରୁ, ହୋ ଗରୁଡ଼ । ୨୦ ।

ତୋତେ ଦେଖିଲି ଆଜ ମୋ ଧନ୍ୟ,
ଯାହା ଶୁଣିଥିଲି ବେଦ କର୍ଣ୍ଣ,
ଲକ୍ଷ ହୋଇ ଦିଶ ଉଠ ମୋର ବାପ,
ଉଠ ଉଠ ତୁ କୃଷ୍ଣବାହାନ ହୋ ଗରୁଡ଼ । ୨୧ ।

ରାଧା ଗରୁଡ଼କୁ ତୋଳି ଧରି,
କୃଷ୍ଣ ବାମେ ରହିଲେ ଝଟରି,
ଦେଖିଲେ ଦୂରେ ଦର୍ଶନ କରୁଛନ୍ତି,
ଭୂମି ଲୋଟିଣ ରାଜକୁମାରୀ ହେ ସୁଜନେ । ୨୨ ।

ରାଧା ବୋଇଲେ ଉଠ ଗୋ ମିତ,
ଲକ୍ଷ ହୋଇଦିବ ପ୍ରାଣମିତ,
ଶୀଘ୍ର ହୋଇ ଉଠି ଆସ ଜୀବଧନ,
ମୋର ପ୍ରାଣର ଶ୍ରେଷ୍ଠ-ସଖୀ'ଙ୍କ ଗୋ ସଜନୀ । ୨୩ ।

ରାଧା ବଚନ ଅମୃତ ଶୁଣି,
ଅଙ୍ଗ ପୁଲକେ ସର୍ବତରୁଣୀ
ଭସ୍ମ ସର୍ବ ଛାଡ଼ି ଉଠି ଉଷ୍ଣରଲେ,
ସର୍ବେ ଶିରେ ଦେଇ ବେନିପାଣି; ହେ ସୁଜନେ । ୨୪ ।

ରାଧା ଲାବଣ୍ୟ ବଦନ ଦେଖି,
ଭାବେ ଜଡ଼ିଲେ ସର୍ବ ସୁମୁଖୀ,
ଲବର୍ଣ୍ଣପିରୁଲୀ ପ୍ରାୟେ ହୋଇଛନ୍ତି,
ଜଳେ ଢଳହଳ ବେନି ଅକ୍ଷି; ହୋ ସୁଜନେ । ୨୫ ।

ରାଧା ବୋଇଲେ ଆଜ ମୋ ଧନ୍ୟ,
ମୁହିଁ ଦେଖିଲି ତୁମ୍ଭ ବଦନ,
ମନ ଜାଣି ଆଣି ଭେଟ କରାଇଲେ,
ପ୍ରଭୁ କୃପାସିନ୍ଧୁ ଭଗବାନ; ଗୋ ମିତଣି । ୨୬ ।

ତୁମ୍ଭେ ଜଗନ୍ନାଥଙ୍କ ଭାବିନୀ,
ତୁମ୍ଭେ ଯେ ଜଗଜନଜନନୀ,
ପ୍ରଭୁଙ୍କ କଥାଟି ତୁମ୍ଭଙ୍କ ଲାଗି,
ଅଉ କେବେହେଁ ନୋହିବ ମାନୀ; ଗୋ ମିତଣି । ୨୭ ।

ପ୍ରଭୁ ମନ ଜାଣି ସେବାଥିବ,
ସର୍ବ ସଖୀ ହୋଇ ଏକଭାବ,
ସଦା ଆନନ୍ଦେ ଦନକାଳ ହରିବ,
ପ୍ରଭୁ ଯେମନ୍ତେ କଷ୍ଟ ନୋହିବ, ଗୋ ମିତଣି । ୨୮ ।

ଏତେ କହୁ ଅନଥନ ଆକ୍ଷି,
ବେଢ଼ି ହୋଧେ ଗଦଗଦ ସଖୀ,
ତତ୍‌କ୍ଷଣେ ଅଞ୍ଚଳେ ଲୋତକ ପୋଛିଣ,
ଶୋକ ସମ୍ଭାଳିଲେ ଚନ୍ଦ୍ରମୁଖୀ; ହେ ସୁଜନେ । ୨୯ ।

ଦେଖି ରୁକ୍ମଣୀ ସଖୀଙ୍କ ଠାର,
ଆଗେ ସେବିଲେ ଚାମର ଧରି,
ଯେ ଯାହା ସେବାଆୟୁଧ କରେ ଯେନି,
ସେବା ଖଟିଲେ ରାଜକୁମାରୀ; ହେ ସୁଜନେ । ୩୧

ଶୁଣି ବୋଲେ ଭୀଷ୍ମକକୁମାରୀ,
ତୁମ୍ଭେ ଆମ୍ଭଙ୍କ ପ୍ରଭୁ ଦୋସରି,
ଆମ୍ଭ ଛାର ନିରବଧି ଅପରାଧୀ,
ତୁମ୍ଭ ପାଦକୁ ନୋହୁ ଯେ ସରି; ଗୋ ଈଶ୍ୱରି ।

ତୁମ୍ଭେ ଠାକୁରାଣୀ-ପଣେ ବଡ଼
ଆମ୍ଭେମାନେ ଭବବୃକ୍ଷ ଜଡ଼,
ତୁମ୍ଭ ପ୍ରଭୁ ଭାବ ଆମ୍ଭେ କି ଜାଣିମୁଁ,
ଆମ୍ଭ ହୃଦୟ ନୁହଇ ଦୃଢ଼; ଗୋ ଈଶ୍ୱରି । ୩୨ ।

ତୁମ୍ଭ ପ୍ରସନ୍ନେ ଏଣିକି ଅବା
ଦେଖି ଯାଉଁ ଜାଣିମୁଁ ସେବା,
ଯହୁଁ ଥିଲେ ଆମ୍ଭେ ତୁମ୍ଭ ପରଦୃଷ୍ଟା,
ଆମ୍ଭ ଅପ୍ରାଧ କ୍ଷମା କରିବା; ଗୋ ଈଶ୍ୱରି । ୩୩ ।

ଏତେ କହିଣ ଚରଣ ଧରି,
ରାଧାପାଦେ ନମିଲେ ସୁନ୍ଦରୀ,
ତୋଳି କୋଳ କରି ହାତ ଧରି ନେଇ,
ରାଧା ସମର୍ପି ଦେଲେ ମୁରାରି; ହେ ସୁଜନେ । ୩୪ ।

ମୋର ପ୍ରାଣେ ଏହାଙ୍କୁ ଦେଖିବ,
ଦୋଷ କଲେ ତାହା ଉପେକ୍ଷିବ,
ଆଉ ଯେତେ ନାରୀ ସବୁ ସମ କରି,
ପ୍ରଭୁ ଏହାଙ୍କ ସଙ୍ଗେ ଲେଖିବ; ହେ ଗୋବିନ୍ଦ ।। ୩୫ ।

ଅନ୍ୟ ନର୍ମଖୀ ଗୋପୀଙ୍କ କଥା,
ପ୍ରଭୁ ମନ୍ତ୍ର ନ ଛାଡ଼ିବ ଚନ୍ଦ୍ରା,
ଦୋଷକୁ ହଟତ ଯାହା ବନ୍ଧୁଅଛୁ,
ତାହା କେ କରିପାରେ ଅନ୍ୟଥା; ହେ ଗୋବିନ୍ଦ ।

ଏତେ ବନ୍ଧୁ କଥା ଗର୍ବେ ଭରି,
ବାହ୍ୟେ ହରଷ ଆରମ୍ଭ କରି,
ପକ୍ଷିବର ଯାସ୍ତେ ପାଶ୍ତେଟି ଅଇଲେ,
ରାଧାସଙ୍ଗେ ଯେତ ବ୍ରଜନାରୀ; ସୁଜନେ ।

କେତ୍ତ ବୋଲନ୍ତି ସକଳ ଗୋପୀ,
ବାବୁ ଗରୁଡ ଏ ବଡ ତପୀ,
ପକ୍ଷୀରୂପ ଧରି ପ୍ରଭୁଙ୍କ ବିଶ୍ୱାସ,
ଯେସନ୍ତେ ରାମଚନ୍ଦ୍ର ହନୁକପି; ଗୋ ସଜନି । ୩୮ ।

କେହୁ ବୋଲନ୍ତି ଏ ଥିଲ କାହିଁ,
ଏ ତ ଏତେକ ଅଣିଛୁ ବନ୍ଧୁ,
ରୂପ ଗୋପ୍ୟ କରି ସାମାନ୍ୟ ଦିଶୁଛୁ,
ଦେଖ ବସିଛୁ ମଉନ ହୋଇ; ଗୋ ସଜନି । ୩୯ ।

କଥା କହଇ କେମନ୍ତ କରି,
ଶୁଣି ନ ପାରଲୁଁ ଗୋପନାରୀ,
ଜାଡ଼ କାଳ ପ୍ରାପ୍ତେ ହୋଇ ବସିଅଛୁ,
ଯେସନ୍ତେ ଯୋଗଇନ୍ଦ୍ର ଧ୍ୟାନ ଧରି; ଗୋ ସଜନି । ୪୦ ।

ଦେଖ ଦେଖ ଗୋ ସୁନ୍ଦର ଡୋଳା,
କି ଏ ମାଣିକ୍ୟ ରଙ୍ଗ ପୋସ୍ତେଲା,
ଅଧର ସୁନ୍ଦର ଅରୁଣ ରେଖା କି,
ବାନ୍ଧି କସ୍ତୁରୀ କଣ୍ଠାର କଳା; ଗୋ ସଜନି । ୪୧ ।

ଦେଖ ସୁନ୍ଦର ଏ ହରି ନାକ,
ଦନ୍ତା ଖଣ୍ଡର ସ୍ୱାଦ୍ୟେ ପଲଖ,
ନାକତଳେ ନଣ ମୋଡ଼ି ଦେଇଅଛୁ,
ଏତ ଛବିଙ୍କ ଉପରେ ଟେକୁଙ୍କ ଗୋ ସଜନ । ୪୨ ।

ଦେଖ ଦେଖ ଗୋ ସୁନ୍ଦର ଗଳା,
ସେ ତ କମ୍ବୁର ପ୍ରାୟେ ଧବଳା,
ଏତେ ବୋଲି ଗୋପୀ ଗ୍ରୀବା ପାଇ ଅଛ,
ସବେ ଲମ୍ବାଇଲେ ପୁଷ୍ପମାଳାଙ୍କ ଗୋ ସଜନ । ୪୩ ।

ତୁ ଯେ ପ୍ରଭୁଙ୍କ ସମ୍ମୁଖରେ ଆଜ,
ଦେବ-ସୁନ୍ଦରମାନ ଜଣାଉ,
ଥରେ ଥରେ ଆମ୍ଭ କଥା ଜଣାଇବୁ,
ତୋର ଧର କହୁଅଛୁଁ ପାଉଁ; ହେ ଗରୁଡ଼ । ୪୪ ।

ଶୁଣି ଗରୁଡ଼ ନୁଆଇଁ ମଥା,
ଅଣି ବୃଜ ନ କହିଲ କଥା,
ଗୋପୀଙ୍କି ଉପେକ୍ଷି ଦିବାକୁ ଗୋବିନ୍ଦ,
ପ୍ରଭୁ ହୃଦପଦ୍ମେ ବଡ ବ୍ୟଥା; ହେ ଦଇବ । ୪୫ ।

ରାଧାମୁଖ ଚୁମ୍ବି ହୃଷୀକେଶି,
ଯାଇ ଗରୁଡ଼ ପୃଷ୍ଠରେ ବସି,
ରାଧାଙ୍କୁ ଆଜ୍ଞା ମାଗି ରାଜକୁମାର,
ସବେ ଆପଣେ ବସିଲେ ଆସି; ହେ ସୁଜନେ । ୪୬ ।
ଗୋପୀ ଚାହିଁ ଚାହିଁ ଖଗପତି,
ଉଡ଼ି ଚଳିଲ ଗଗନ ପଥ,
ପଲକ ନ ପଡୁ ଦ୍ୱାରକା ମିଳିଲ,
ଆସି ପ୍ରସର ହୋଇଲା ରାତି; ହେ ସୁଜନେ । ୪୭ ।

ଜାଣି ତାମ୍ରଚୂଡ଼ ଦେଲା ରଡ଼ି
ପ୍ରଭୁ ପଲଙ୍କେ ଛଣେ ପହୁଡ଼ି
ଅନ୍ତପୁରେ ସବୁ ରାଣୀ ପହୁଡ଼ିଲେ,
ଗଲେ ଗରୁଡ଼ ପୁରକୁ ଉଡ଼ି; ହେ ସୁଜନେ । ୪୮ ।

ରାତ୍ର ନ ପାହୁଁ ଉଠି ଶ୍ରୀହରି,
ପ୍ରଭୁ ନିତ୍ୟକର୍ମମାନ ସାରି,
ମର୍ଦ୍ଦନ ସ୍ନାହାନ ଅମୃତ ଭୋଜନ,
ପ୍ରଭୁ ତାମ୍ବୁଲ ଭୋଜନ କରି; ହେ ସୁଜନେ ॥

ପ୍ରଭୁ ରତ୍ନସିଂହାସନେ ବସେ,
ସଭାମଣ୍ଡଳମଧ୍ୟେ ବିରାଜେ,
ଆନ ଦେବ ସର୍ବ ଦୁଃଖ ଜଣାଇଲ,
ମୋତେ ରକ୍ଷା କର ଦେବରାଜେ; ହେ ଗୋବିନ୍ଦ ॥

ଗାହା—ଇତି ଶ୍ରୀ ରହସ୍ୟମଞ୍ଜରୀ ବିଂଶ ଛାନ୍ଦେ;
ସର୍ବ ସଂବୋଧ ବାଞ୍ଛାପୂର୍ଣ୍ଣ ବନ୍ଧେ,
ଏକବିଂଶ ଛାନ୍ଦ ବର୍ଣ୍ଣନେ କେବଳ କେବଳବୋଧ,
କହିବାକୁ ଆଜ୍ଞା ହୋଇ ଏଥିର ଯେ ପ୍ରବନ୍ଧ । ୨୦ ।



## ଏକବିଂଶ ଛାନ୍ଦ



ରାଗଗୁଣ୍ଡକେରୀ—ଦାଶ ଭୈରବ

ଏଥୁ ଅନନ୍ତରେ ଶୁଣ ଅପୂର୍ବରସ ହେ
ଅଳ୍କେଶ୍ୱର ପୁରେ ମହାଦେବୀ ।
ନିତ୍ୟକର୍ମ ଆଦି କରି ଯେ ବିଧି ବିଧାନ ହେ
ନିଯୋଗ ବିବିଧସେବେ ସେବି । କି ସନ୍ଦେହେ ॥

ସ୍ୱେଜନ ଶସ୍ତନ ଅନ୍ୟ ସ୍ଥଳ
ଏମନ୍ତେ କେତେହେଁ ଦିନ ଅବସାନ ଗଲା ହେ
ଗୋବିନ୍ଦ ବିଜୟେ ଏକ ରାତ । ୧ ।
ବହୁଧମଣୀମନ୍ଦିରେ ସୁବର୍ଣ୍ଣପଲଙ୍କେ ହେ
ବିମଳେ ରୁକ୍ମିଣୀ ଥିଲେ ଶୋଇ ।
ଶ୍ରୀହରି ପଲଙ୍କେ ବସି ଦେହେ କର ଦେଲେ ହେ
ଉଠି ଦେବୀ ଚଳେ ଭୟ ହୋଇ । କ ପ୍ରଭୁ ହେ ।
କ କାର୍ଯ୍ୟେ ଅଇଲ ମୋତେ କହ ।
ତୁମ୍ଭେ ସର୍ବେଶ୍ୱର ଆମ୍ଭେ ମାନବୀ ମାତର ହେ ।
କ କାରଣେ ଛୁଇଁଅ ଆମ୍ଭ ଦେହ । ୨ ।
ଅତି ଅଜ୍ଞଜନ ଆମ୍ଭେ ଅଯୋଗ୍ୟ ଯୁବତୀ ହେ
ହସ୍ତଅଗ୍ରେ ଛୁଇଁ ନ ଯୋଗାଇ ॥
ଆମ୍ଭେ ମହାପାପୀ ପୂର୍ବେ ତପ କରି ନାହୁଁ ହେ
ଶ୍ରୀଅଙ୍ଗ ଛୁଇଁବୁ ଅବା କାହିଁ । କ ପ୍ରଭୁ ହେ ।
ଆମ୍ଭେ ନୀଚ କୀବନ୍ତ ନାଲୁଛ ।
ପ୍ରଭୁମାନଙ୍କର ଏହୁ ଅତି ଅବେଷାର ହେ
ଉଚ ତେଜି ନୀଚନାଶି ଇଚ୍ଛ । ୩ ।
ପୁଣ୍ୟରେ ମିଶଇ ପୁଣ୍ୟ ପାପେ ନ ମିଶଇ ହେ
ପାପ ଲାଗି ପୁଣ୍ୟ ହୋଇଯିବ କ୍ଷୀଣ ॥
ଅଭାବ ଯୁବତୀ ସଙ୍ଗେ ଭାବ ବଢାଇଲେ ହେ
ଅଯୋଗ୍ୟ ସଙ୍ଗତେ ଯଶ ମ୍ଳାନ । କ ପ୍ରଭୁ ହେ ।
କ ବିଚାରି ଅଇଲ ମୋ ପାଶ
ଅଲଗ ସେବକା ଆମ୍ଭେ ଦୂରରେ ସେବବୁ ହେ
ନ ଛୁଇଁବୁ ନାଜ ସ୍ନେହ ବାସ । ୪ ।

---

୧—୬ ଦିନ ଅବସ୍ଥାରେ ଗଲା ( ଗ ) । ୨—୩ ଦେହ ଆଉଁଶିଲେ । (ଘ) ।

ନ ଜାଣି ଅଗ୍ୟାନେ ପତି ବୁଦ୍ଧି କରିଥିଲୁ ହେ
ତୁମ୍ଭେ ହେ ଉତ୍ସ୍ରୋଧେ ନେଇଥିଲ ।
ଆମ୍ଭର ଅପ୍ରାଧ ଦେଖି ଝଣ୍ଟି ପକାଇଲ ହେ
ଯେନ୍ତୁ ଯେତେ ତେତେକେ ରଖିଲ । କ ପ୍ରଭୁ ହେ ।
ଭଲ କଲ ରକ୍ଷିଲ ଆମ୍ଭର
ସହଜେ ଯାନଲୋକଙ୍କୁ ବଳପଣ ଦେଲେ ହେ
ନ ରଖନ୍ତି ପ୍ରଭୁଙ୍କ ବେଢ଼ର । ୫ ।

ଏତେ ବୋଲି ମହାସତୀ ଗଦଗଦ ହୋଇ ହେ
ଶୋକେ କହି ନ ପାରନ୍ତି ବାଣୀ ।
ଲୋଚନୁ ଲୋତକ ଦେଖି ଥୋପା ଥୋପା ପଡ଼େ ହେ
ଦେଖି କୋଳ କଲେ ଚକ୍ରପାଣି । କ ସନ୍ତ ହେ ।
ପଲଙ୍କେ ବସାଇ ଶୁଭ୍ରକେଶୀ ।
ଚଞ୍ଚଳେ ଲୋତକ ପୋଛି ହୃଦରେ ଭିଡ଼ିଣ ହେ
ମୁଖ ଚୁମ୍ବି କହନ୍ତି ଆଶ୍ୱାସି । ୬ ।

ପ୍ରବୋଧ ସମ୍ଭାଳ ତୁମ୍ଭେ ଶୁଣ ପ୍ରାଣପ୍ରିୟେ ଗୋ
ତୁମ୍ଭେ ଅଟ ସୁବ୍ରତା ରତନ ।
ରୂପ ଗୁଣ ବୁଦ୍ଧି ଶୁଦ୍ଧି ଆମ୍ଭର ବସ୍ୟରେ ଗୋ
ସର୍ବଗୁଣେ ସର୍ବଦା ସମ୍ପୂର୍ଣ୍ଣ । କ ସଖି ଗୋ ।
ତୁମ୍ଭେ ସର୍ବବ୍ରହ୍ମାଣ୍ଡମଣ୍ଡନୀ ।
ତ୍ରିଭୁବନ-ଜନମନ ଆନନ୍ଦଦାୟିନୀ ଗୋ
ସର୍ବ-ଦୁଃଖ-ଦାରିଦ୍ର୍ୟଖଣ୍ଡନୀ । ୭ ।

ଆମ୍ଭେ ନାରାୟଣ ଅଟୁ ତୁମ୍ଭେ ନାରାୟଣୀ ଗୋ
ଆମ୍ଭେ ବ୍ରହ୍ମା ତୁମ୍ଭେ ବ୍ରହ୍ମାୟଣୀ ।
ଆମ୍ଭେ ରୁଦ୍ର ଅବତାର ତୁମ୍ଭେ ରୁଦ୍ରାୟଣୀ ଗୋ
ସର୍ବଭୂତେ ତୁମ୍ଭେ ବିହାରଣୀ । କ ସଖି ଗୋ ।

ତୁମ୍ଭେ ଅଷ୍ଟ ସିଦ୍ଧି ପୁରନ୍ଧ୍ରିଶ୍ୱରୀ ।
ଦଶଅବତାର ଆମ୍ଭେ ଭୁଞ୍ଜୁଥିଲେ ଧରି ଗୋ
ତୁମ୍ଭେ ଲକ୍ଷ୍ମୀରୂପେ ମନୋହାରୀ । ୮ ।

ତୁମ୍ଭ ଆମ୍ଭ ଯଥା ତନ ଭିନ୍ନାଭିନ୍ନ ନାହିଁ ଗୋ
ରତି ପ୍ରୀତି ଶ୍ରୁତି ଏକ ଦେହ ।
ତୁମ୍ଭେ ରତି ଯଥା ପ୍ରୀତି ଆମ୍ଭେ ଶ୍ରୁତି ଜାଣ ଗୋ
ଏଥେ କାହିଁ ଅଛଇ ସନ୍ଦେହ । କ ପକ୍ଷୀ ଗୋ ।
ତନ ସୁଖ ଆତ୍ମାକୁ ପ୍ରବେଶ ।
ଶ୍ରୁତିରୁ ଜନମ ପ୍ରୀତି ପୀରତିରୁ ରତି ଗୋ
ରତଠାରେ ପୂର୍ଣ୍ଣ ସର୍ବରସ । ୯ ।

ଜୀବ ପରମ ପ୍ରକୃତି ଏକ ଦେହେ ସ୍ଥିତି ଗୋ
ଲୀଳା ଅର୍ଥେ ଭିନ୍ନ ଜନ୍ମ ଯେଣୁ ।
ଏ ମୋହ ସଂସାରେ ପଡ଼ି ଅଜ୍ଞାନ ହୋଇଲ ଗୋ
ତୁମ୍ଭଙ୍କୁ ନ ଜାଣ ତୁମ୍ଭେ ତେଣୁ । କ ପକ୍ଷୀ ଗୋ ।
ଛାଡ଼ ଏବେ ବିଅର୍ଥ ସନ୍ତାପ ।
ଜହ ଜ୍ଞାନ ତେଜ ପ୍ରିୟେ ପରମକୁ ଚେତ ଗୋ
ତୁଟୁ ସର୍ବ ମାୟା ମୋହ ତାପ । ୧୦ ।

ରୁକ୍ମଣୀ ବୋଇଲେ ପ୍ରଭୁ ଅଜ୍ଞାନର ଜ୍ଞାନ ହେ !
ଅଚେତର ଚେତନା ସ୍ୱରୂପ ।
ଯେତେ କହୁଅଛ ପ୍ରଭୁ ତେତେ ମୁଁ ନବୁଝଇ ହେ
ତେଣୁ ମୋର ଭ୍ରାନ୍ତି ଯେ ବିଶେଷ । କ ପ୍ରଭୁ ହେ ।
ଅଧିକ ମୁଁ କହୁ ନାହିଁ ଆନ ।
ତୁମ୍ଭ ଆମ୍ଭ ଯଥା କାହିଁ କେମନ୍ତ ପ୍ରମାଣ ହେ
ଦେଖାଇବ ମୋତେ ମୂଳ ସ୍ଥାନ ୧୧ ।

ଶ୍ରୀକୃଷ୍ଣ ବୋଇଲେ ସଖି ଦୁର୍ଗମ କହିଲ ଗୋ
ନଗରଟି ପରମ ପ୍ରେମଧାମ ।
ନଗର ପ୍ରାପ୍ତେକ ସଖି ଯିବା କଷ୍ଟ ଗୋ
ପାଳନ୍ତି ବସିବା ଅଷ୍ଟ ଯାମ । କି ସଖି ଗୋ ।
ଅସିବା ନିକଟ, ଯିବା ଦୂର ।
ଅନେକ ଜନମ ସାଧ୍ୟ ସଂସିଦ୍ଧ ହୋଇଲେ ଗୋ
ତେବେ ଲଭି ପାର ସେହି ପୁର । ୧୨ ।
ବିନା ଯନ୍ତ୍ର ମନ୍ତ୍ର ଭେଦ ନ ଜାଣି କି ସିଦ୍ଧ ଗୋ
ବିନା ଗୁରୁ କୃପାରୁ କି ପାଇ
ତଥି ଉପଦେଶ ଗୁରୁ ଯେ ପୁଣି ସୁନ୍ଦରୀ ଗୋ
ଚତୁର୍ଦ୍ଦଶ ପ୍ରମାଣେ ତା କହି । କି ସଖି ଗୋ ।
ତାଙ୍କ ଯାଇ ଯାଇ ପାର ଯେବେ ।
ଯନ୍ତ୍ର ମନ୍ତ୍ର ସବୁ ଭେଦ ସେ ଯେବେ କହିବେ
ସିଦ୍ଧ କଲେ ଲଭି ପାର ତେବେ । ୧୩ ।
ସୁର ମହେଶ୍ୱର ବ୍ରହ୍ମା ଆଦି କୋଟି କୋଟି ଗୋ
ତାଙ୍କପାଏ ଯାଏ ତ ନ ପାର
ଅଶେଷ ଦୁର୍ଗମ ପଥ ନିଗମେ ଅଗମ୍ୟ ଗୋ
ଭେଦ ଶକ୍ୟ ନୋହିଇ କାହାର । କି ସଖି ଗୋ ।
ଯେବେ ତୁମ୍ଭେ ଦୃଢ଼ କଲ ମନେ ।
ପାର କି ନ ପାର ସଖି ଗମନ କରିବା ଗୋ
ସତ୍ୟ କର କହୁଛୁଁ ବଚନେ । ୧୪ ।
ଶୁଣି ଏବେ ବ୍ରଜ ପ୍ରିୟେ ହସି କଥା କହି ଗୋ
ରଙ୍ଗ-ଚନ୍ଦ୍ର ମୟୂଖ ପ୍ରକାଶୁ ।
ସୁରଘୋର ଅନ୍ଧକାର ତମିର ବିନାଶୁ ଗୋ
ସଂକୁଚେଣ ପିକ ଝାଡେ ଝାସୁ । କି ସଖି ଗୋ ।

୧୪—୪ :— ପିକ ବୃକ୍ଷେ ବସୁ: ପଣୁ ( କ, ଖ, ) ।

ତୁଙ୍ଗ ଉର ଅମ୍ବର ଉପେଖ ।
ଅଦତ ହୃଦସ୍ଥ ମୋର ଭଜି କର ଦଣ୍ଡ ଗୋ
ବଦନ ଚୁମ୍ବିଣ ପ୍ରାଣ ରଖ । ୧୫ ।
ଶୁଣି ଶଶିମୁଖୀ ମନେ ମନସିଜବୋଧେ ହେ
ବେଳୁ ବେଳ ବଢ଼ଲ ଉଲ୍ଲାସ ।
ଲକ୍ଷ୍ମୀନାରାୟଣ ସୁଖସମୁଦ୍ରେ ମଜ୍ଜିଲେ ହେ
କହେ ଦେବକୃଷ୍ଣ ଭଞ୍ଜେ ଦାସ । କ ପନ୍ଥ ହେ ।
ଶ୍ରୀହରିମହିମା ଅଗୋଚର ।
ଯଦ୍ୟପି କହି ଲେଢ଼ିଲେ ଶକ୍ୟତି କାହାର ହେ
ବାହୁଲେ କ ତରଇ ସାଗର । ୧୬ ।

ଗାହା:—ଇତି ଶ୍ରୀ ବ୍ରହ୍ମଯାମନ୍ତ୍ରଗ୍ରେ ଏକବିଂଶ ଛାନ୍ଦେ ।
କାନ୍ତରତିରସକେ କାନ୍ତାଅଭିମାନ ବନ୍ଦେ ।
ଦ୍ୱାବିଂଶଗ୍ରନ୍ଥ ବର୍ଣ୍ଣିବେ କେବଣ ଗାନ ।
କହିବାକୁ ଆଗ୍ୟାଁ ହୋଇ ପରମ ଅଗମ୍ୟ ଗ୍ୟାନ । ୬୧ ।



## ଦ୍ୱାବିଂଶ ଛାନ୍ଦ ।



ସଙ୍ଗମତିଆସ୍ଥି ବାଣୀରେ ଗାଇବ ।

ଜୟ ଜୟ କୃଷ୍ଣପ୍ରିୟା ରୁକ୍ମିଣୀ ନାମ
ସୁନ୍ଦରପଣେ କୁଳିଷ କ ଦେବୀ ସମ । ୧ ।
ଶ୍ରୀକୃଷ୍ଣରମଣୀ ଯେହୁ କାମର ମାତ
ଯାହାର ପ୍ରକୃତିଅଂଶୁଁ ଅଶେଷ ଜାତ । ୨ ।
ସଂହାରଣୀ ପାଳଣୀ ଧାରଣୀ ସଂସାର
ପ୍ରକୃତିକାରଣୀ ସର୍ବଭୂତେ ବିସ୍ତାର । ୩ ।

ଗଙ୍ଗା ଗୟା ଗୋଦାବରୀ ତୀର୍ଥ ସରୂପୀ
ଭକତ କାରଣେ ଦେବୀ ଜଗତେ ବ୍ୟାପି । ୪ ।

ଲୀଳା ଅର୍ଥେ ଏକ ରୂପ ଅନେକ ହୋଇ
ପ୍ରଭୁ ଠାକୁରାଣୀ ବିନୁ ଅନ୍ୟ କାହିଁ । ୫ ।

ମୋ ସ୍ତୁତିର ଜସ କହିବ ତୁମ୍ଭ ମହିମା
ଦୁରିତନାଶିନୀ ଦୋଷ କର ମୋ କ୍ଷମା । ୬ ।

ଏଥୁ ଅନନ୍ତରେ ତୁମ୍ଭେ ଶୁଣ ସୁଜନ
ପରମ ରହସ୍ୟ ରସ ନିତ୍ୟ ଆଖ୍ୟାନ । ୭ ।

ଗରୁଡ଼ ବାହନ ପ୍ରଭୁ ଶ୍ରୀ ଜଗନ୍ନାଥ
ରୁକ୍ମିଣୀ ସେବନେ ଭଜେ ପରମ ପଥ । ୮ ।

ବ୍ରହ୍ମାଣ୍ଡ-ଅଣ୍ଡ-କଟାହ ବଳଣ ଯାଇଁ
ବାସୁଦେବ ଆଳ ଜଳବୈକୁଣ୍ଠେ ହୋଇ । ୯ ।

ବୋଲନ୍ତି ଶ୍ରୀହରିପ୍ରିୟା ଶୁଣ ଗୋ ତୁମ୍ଭେ
ଏ ପୁରେ ରୁକ୍ମିଣୀ ବାସୁଦେବଙ୍କ ଆମ୍ଭେ । ୧୦ ।

କାହୁଁ କାହୁଁ ଜଳମୟ ପୁର ଜିଣିଲେ
ଅନଳମୟ ଭୁବନେ ଯାଇଁ ମିଳିଲେ । ୧୧ ।

ଅଗ୍ନି ତେଜ ଦେଖି ଭୟ କଲେ ରୁକ୍ମିଣୀ
ହୃଦରେ ରଖିଲେ ଭକ୍ତ ଶାରଙ୍ଗପାଣି । ୧୨ ।

ଜଳନ୍ତା ଅନଳେ ଝାସି ଗରୁଡ଼ ଚଳି
ଅନେକ ଯୋଜନ ଅଗ୍ନି ଗଲା ନିଭିଲି । ୧୩ ।

ବହୁତ ବିସ୍ତାର ଝର୍ଘ ଗଗନ ପନ୍ଥ
ଜିଣିଲା ବିଚିତ୍ରଗତି କଶ୍ୟପସୁତ । ୧୪ ।

ସେଠାରୁ ତେଣିକି ଅନ୍ଧକାର ଭୁବନ
ନିଜ ଅଙ୍ଗ ନ ଦିଶଇ ସବୁକେ ଶୂନ୍ୟ । ୧୫ ।

ମହାଭୟ ଉପୁଜିଲା ଶ୍ରୀହରିପ୍ରିୟା
ଦରଶି ଭଜିଲେ ଦେବୀ ଗୋବିନ୍ଦ ହୃଦୟା ୧୬ ।

ସୁଦର୍ଶନ ଚକ୍ର ସେନ ଶ୍ରୀ ବନମାଳ
ତର୍ଜନୀ ଅଙ୍ଗୁଳି ଉର ଜ୍ୱଳନ୍ତ ଜ୍ୱାଳ । ୧୭ ।

ଜ୍ୱଳଇ ଖଣ୍ଡିଲେ ଦେବ ଶୂନ୍ୟ ପନ୍ଥେଣ
ଗରୁଡ଼ ଉଡ଼ଇ ଚକ୍ର ଧରନ୍ତେ ପଛେଣ । ୧୮ ।

କୋଟିଏ ସୂର୍ଯ୍ୟର ଜ୍ୟୋତି ଚନ୍ଦ୍ରର ତେଜ ।
ଉତ୍ତରେ ଲଙ୍ଘିଲେ ତାହା ଦେବାଧିରାଜ । ୧୯ ।

ମନୋମୟେ ପୁରେ ପଶି ବୁଦ୍ଧିକି ଲଙ୍ଘି ।
ଅହଙ୍କାରମୟ ପୁରେ ଜଣିଲେ ବେଗି । ୨୦ ।

ପ୍ରକୃତିମଣ୍ଡଳେ ଯାଇଁ ପ୍ରବେଶ ହୋଇ
ଅର୍ଦ୍ଧମାତ୍ରା ସନ୍ନିଧେଣ ମିଳିଲେ ଯାଇଁ । ୨୧ ।

ଶଙ୍ଖ ଚକ୍ର ଗଦା ପଦ୍ମ ମୁରତି ହୋଇ ।
ଦୁର୍ଗତିତାରିଣୀ ଦୁର୍ଗା ସେଠାରେ ରହି । ୨୨ ।

ବୋଲନ୍ତି ଶ୍ରୀହରି ତୁମ୍ଭେ ଶୁଣ ରୁକ୍ମିଣୀ ।
ଏହି ମହାଦେବୀଟି ପ୍ରକୃତି-କାରଣୀ । ୨୩ ।

କୋଟି କୋଟି ବିଷ୍ଣୁ ପାଦରଜରୁ ଜାତ ।
ଏ ପୁଣି ରାଧାଙ୍କ କୋଟି କଳାରୁ ଖ୍ୟାତ । ୨୪ ।

ସତ୍ୟାନନ୍ଦେ ମୈତ୍ରୀ-ପୁର-ଦୀପ ତୁଲ୍ୟ ।
ତ୍ରିଲୋକଜନନୀ ଏଟି ଅନାଦି ନାରୀ । ୨୫ ।

ଏହାଙ୍କ କଳାରୁ ତୁମ୍ଭେ ଜନମ ହୋଇ ।
ଜନମେ ଜନମେ ବିଷ୍ଣୁ ପ୍ରିୟା ବୋଲାଇ । ୨୬ ।

ଏତେ କହି ସେଠାରେ ଦର୍ଶନ କରି ।
ପ୍ରବେଶ ହୋଇଲେ ବେଦମାତାଙ୍କ ପୁରୀ । ୨୭ ।

ବିରାଟ ପ୍ରକୃତି ଏହୁ ସେ ଦଶହାତ ।
ବିରଜା ବୋଲିଣଟି ଏହାଙ୍କୁ ବୋଲନ୍ତି । ୨୮ ।

ବ୍ରହ୍ମା ବେଦ ଏହୁଠାରେ ଜନମ ହୋଇ ।
ତେଣୁକି ଦେବେତାମାଙ୍କୁ ବିରଜା କହି । ୨୯ ।

ସହସ୍ରଶିରଷା ନାମେ ବେଦପୁରୁଷ ।
ବେଦମସ୍ତେ ସୃଷ୍ଟି ଏହୁ କରିଲ ପ୍ରକାଶ । ୩୦ ।

ଏଣିକି ବ୍ରହ୍ମାର ବେଦ ଗମନ ନାହିଁ ।
ତେଣୁକି ନିଗମ ନିତ୍ୟ ଅଗମ୍ୟ କହି । ୩୧ ।

ସେଠାରୁ ଦର୍ଶନ କରି ବେଗେ ଚଳିଲେ ।
ଲିଙ୍ଗରୂପୀ ଶିବପୁରେ ଯାଇ ମିଳିଲେ । ୩୨ ।

ଦର୍ଶନ କରି ବୋଲନ୍ତି ଶୁଣ ସୁନ୍ଦରି ।
ଏହାଙ୍କ ମହିମା ଦେଖି କହି ନ ପାରି । ୩୩ ।

ଲୋଚନଜ୍ୟୋତିରୁ ଯାର ହୋଏ ପ୍ରକାଶ
ରବି ଚନ୍ଦ୍ର ଗ୍ରହ ତାରା ମାସ ଦିବସ । ୩୪ ।

ଏତେ କହି ସେ ଭୁବନୁ ବାହାର ଗଲେ ।
କୃଷ୍ଣମୂର୍ତ୍ତି ବ୍ରହ୍ମରୂପୀ ଦର୍ଶନ କଲେ । ୩୫ ।

ଏହିମତେ ଲଙ୍ଘି ଗଲେ ଅନେକ ପୁରୀ ।
ବିଷ୍ଣୁମଣ୍ଡଳ ଯାଇ [illegible] କହି । ୩୬ ।

ଷୋଡ଼ଶ ପ୍ରକାରେ ତହିଁ ମହିମା କହି ।
ବଣିକେଶନ ଭୁବନେ ମିଳଲେ ଯାଇ । ୩୭ ।

ତହିଁ ଯାଇଁ ଅନନ୍ତ-ଭୁବନେ ପ୍ରବେଶ ।
କେ କହି ପାରିବ ସେ ଅଶେଷ ବିଶେଷ । ୩୮ ।

ଗରୁଡ଼-ଭୁବନେ ଯାଇ ପ୍ରବେଶ ହୋଇ ।
ବୋଲନ୍ତି ବୈକୁଣ୍ଠ ପରି ଅଟଇ ଏହି । ୩୯ ।

ଅଷ୍ଟ ଦ୍ୱାରପାଳ ଚଣ୍ଡ ପ୍ରଚଣ୍ଡ ଆଦି ।
ସ୍ୱର୍ଣ୍ଣଦ୍ୱାରେ ମହାବଳୀ ଅଛନ୍ତି ରୁନ୍ଧି । ୪୦ ।

ଦକ୍ଷିଣ ଘୁଞ୍ଚିଲେ ଗଲେ ଭିତରେ ପଶି ।
ଶଙ୍ଖ ଚକ୍ର ଗଦା ପଦ୍ମ ବସ୍ତ୍ର ଧରଣୀ । ୪୧ ।

ବତିଶ ଦଳରେ ଅବତାର ବତିଶ ।
ସ୍ତୁତି କେ ମହିମା ପରି କେ କହୁ ଲେଶ । ୪୨ ।

ତଦନ୍ତରେ ଦଶପଦେ ହୋଇଲେ ପ୍ରବେଶ ।
ପାରୁଶଦେବତା ତହିଁ ଛନ୍ତି ବିଶେଷ । ୪୩ ।

ବୋଲନ୍ତି ଶ୍ରୀକୃଷ୍ଣ ପରି ପ୍ରାଣର ସହି ।
ଉଦ୍ଧବ ଅକ୍ରୂର ମୂଳ ସ୍ଥାନଟି ଏହି । ୪୪ ।

ଆମ୍ଭର ଦ୍ୱାରକା ପରି ଏହୁ ଭୁବନ ।
ଏହିଠାରେ ଭୁଞ୍ଜ ଆମ୍ଭ ସବୁ ସଦନ । ୪୫ ।

ଅଷ୍ଟ ପାଟବଣ ଆଦି ଯେତେକ ନାରୀ ।
ସେ ଯାହା ଠାବରେ ଦେଖି ଚକ୍ର ସୁନ୍ଦର । ୪୬ ।

ପୂର୍ବେ ଆମ୍ଭ ପୁର ସଂକର୍ଷଣ ଦକ୍ଷିଣେ ।
ପଶ୍ଚିମେ ପ୍ରଦ୍ୟୁମ୍ନ ଦେଖ ରତ୍ନରମଣେ । ୪୭ ।

---

୪୭-୨ :—ପଦ୍ମନ ( କ, ଖ, ଗ, ଚ )

ଦ୍ୱାଗ୍ରେ ଉଷା ଅନିରୁଦ୍ଧ ଦେଖ ଗୋ ସଖି ।
ନବ ଆବରଣ ଏହୁ ଠାବରୁ ଦେଖି । ୪୮ ।

ବଢଣ ଦଳରେ ଉପବନ ବଢଣ ।
ଲୀଳା ଆବରଣେ ଲୀଳା ଅଶେଷ ରସ । ୪୯ ।

ଏମନ୍ତ ଶୋଡ଼ଶ ଦଳେ ଶୋଡ଼ଶବନ ।
ବନେ ବନଲୀଳାମାନ ଅତି ଗହନ । ୫୦ ।

ପଦ୍ମ ଦ୍ୱିତୀୟ ଦଳେ ଖଦିର ବନେ ।
ଗୋବର୍ଦ୍ଧନ ଗିରି ସଖି ଦେଖ ଲୋଚନେ । ୫୧ ।
ଆତ୍ମ ଗୋପନବର ଏ ଦେଖ ଗୋ ସଖି ।
ଯହିଁ ଯେତେ ବ୍ରଜବଧୂ ମଧୁର ଲେଖି । ୫୨ ।

ନନ୍ଦପୁର ବୃଷଭାନୁ ମଧୁର ଆଦ ।
ବଚ୍ଛା ବଚ୍ଛପାଳ କେତେ ଛନ୍ତି ଅଚ୍ଛାଦ । ୫୩ ।

ଯମୁନାପୁଳିନବନେ କାଳିନ୍ଦୀ ହ୍ରଦ ।
ଅଷ୍ଟଦଳ ମଧ୍ୟ ଦେଖ ତରୁ କଦମ୍ବ । ୫୪ ।
ଦକ୍ଷିଣ ଦଳଗେ ରାସ ଅଶେଷ ଭୋଗ ।
ବରହ୍ମଣୀ ସ୍ଥାନ ଏଟି ଦେଖ ଗୋ ପଦ୍ମ । ୫୫ ।

ନୈଋତ ଦଳରେ ବେ୍ୟାମାସୁରକୁ ମାରି ।
ଶଙ୍ଖଚୂଡ଼ ବଧ କଲୁଁ ଶୁଣ ସୁନ୍ଦରି । ୫୬ ।
ଉତ୍ପଳବଧୂ ଲଭଣଟି ଏହୁ ଦଳରେ ।
ଏ ପଦ୍ମ ପଶ୍ଚିମ ଦଳେ ଅର୍ଦ୍ଧବ ସଂହାରେ । ୫୭ ।

ଏହୁ ଦଳେ ଧାତା ଆସି କଲା ଦର୍ଶନ ।
ଏହୁ ଦଳେ ସଙ୍ଗଅନ୍ନ କଲୁ ଭୋଜନ । ୫୮ ।

୫୬—୧;—ବେମାସୁରକୁ—ସବୁପୋଥି ୫୭—୨;—ସଂହାରେ—ସବୁପୋଥି

ଏହି ଦଳେ ଖଣ୍ଡିତା ଭାତି ରାଧା ମାନିନୀ ।
ଚରଣ ଧରଣ ବୋଧ କଲ୍ କାମିନୀ । ୫୯ ।

କାବ୍ୟ ବଳେ କାଳୀପୁର କାଳିନ୍ଦୀ ହ୍ରଦ ।
ଗହନ କାନନ ଫୁଲ୍ଲ କୁସୁମ ଗନ୍ଧ । ୬୦ ।

ଏହି ଦଳେ ପୁଷ୍ପବନେ ଗୋପୀଙ୍କ ସଙ୍ଗେ ।
ବିବିଧ-ବିନୋଦ-ଲୀଳା ଅଶେଷ ରଙ୍ଗେ । ୬୧ ।

ଉତ୍କଣ୍ଠିତା ଲକ୍ଷଣଟି ଏ ଦଳେ ବସି ।
ଉତ୍ତର-ଦଳ-ମହିମା ଶୁଣ ସୁକେଶି । ୬୨ ।

ଦ୍ୱାଦଶରବିକରଣ ଶୀତଳ ଚନ୍ଦ୍ରେ ।
କଣୋଷ୍ଣ ବାସକସଜ୍ଜା ହୋଇଛୁ ଛନ୍ଦେ । ୬୩ ।

ଗହ୍ୱର ଅର୍ଚ୍ଚନ କରି ଗୋପଯୁବତୀ ।
ଈଶାଣ ଦଳେ ଲଭିଲେ ଗୋବିନ୍ଦ ପତି । ୬୪ ।

ଏହି ଦଳେ ଗୋପୀଙ୍କର ବସ୍ତ୍ର ହରଣ ।
କଳହାନ୍ତରିତା ଏଥେଁ ବସେ ଲକ୍ଷଣ । ୬୫ ।

ପୂର୍ବଦଳେ କେଶୀବଧ ହୋଇଲା ସନ୍ଧି ।
ଗଙ୍ଗାଦି ସକଳତୀର୍ଥ ଏ ଦଳେ ବନ୍ଧି । ୬୬ ।

ସ୍ୱାଧୀନଭର୍ତ୍ତୃକା ନାମେ ଲକ୍ଷଣ ବସେ ।
ନିକୁଞ୍ଜକୁଟୀର ଦଳ ଅନଳ ଦଶେ । ୬୭ ।

ଅଭିସାରିକା ଲକ୍ଷଣ ବସଇ ଛନ୍ଦେ ।
ରାଧାକୃଷ୍ଣ କେଳିକ୍ରୀଡ଼ା-ସଦନ ଏହି । ୬୮ ।

ଏହି ଅଷ୍ଟଦଳ ରାସଦ୍ୱାରେଣ ଦେଖ ।
ଗୋପୀଶ୍ୱର ମହେଶ୍ୱର ଦ୍ୱାରେ ରକ୍ଷକ । ୬୯ ।

ରୁକ୍ମଣୀ ବୋଇଲେ ଏ ତ ଅନନ୍ତ ମାୟା ।
ଅନ୍ତ ନ ପାଇଲି ଯହିଁ ଦେଖୁଛୁ ଯାହା । ୭୦ ।

ଠାବେ ଠାବେ ବଇକୁଣ୍ଠ ବିଷ୍ଣୁ ମୂରତି ।
ଶଙ୍ଖ ଚକ୍ର ଗଦା ପଦ୍ମ କରେ ଧରନ୍ତି । ୭୧ ।

ଠାବେ ଠାବେ ବାସୁଦେବ ରୁକ୍ମଣୀ ଦେଖି ।
ରାମ କାମ ଅନିରୁଦ୍ଧ କେ କହୁ ଲେଖି । ୭୨ ।

ଠାବେ ଠାବେ ଲକ୍ଷ୍ମୀ ନାରାୟଣ ସରୂପୀ ।
ବିବିଧ ବିଭୂତିମତେ ଆନନ୍ଦରୂପୀ । ୭୩ ।

ଠାବେ ଠାବେ ରାଧାକୃଷ୍ଣ ଗୋପିକାବୃନ୍ଦ ।
ଠାବେ ଠାବେ ରାସକ୍ରୀଡ଼ା ଲୀଳା ଆନନ୍ଦ । ୭୪ ।

ଯଦ୍ୟପି ନ ଯାଇ ପ୍ରଭୁ ଏଥ ମହିମା ।
ସର୍ବମୂଳ-ମଣ୍ଡଳ କେସନେ ଜାଣିମା । ୭୫ ।

ସକଳ-ଦ୍ୱାରକାମୂଳ କେବଣ ଆନ ।
ସର୍ବନିତ୍ୟଥଳ-ମୂଳ କହ ଭୁବନ । ୭୬ ।

ଆଦ୍ୟ ରାଧା ଆଦ୍ୟ କୃଷ୍ଣ ଆଦ୍ୟ ରୁକ୍ମଣୀ ।
ଆଦ୍ୟ ବାସୁଦେବ ପୁର କେମନ୍ତେ ଜାଣି । ୭୭ ।

ଶ୍ରୀହରି ବୋଇଲେ ପଚ୍ଛରିଲ ଦୁର୍ଲଭ ।
ସାଧୁ ସାଧୁ ବୁଦ୍ଧି ତୁମ୍ଭ ଶୁଦ୍ଧି ସୁଲଭ । ୭୮ ।

ଏତେ ବୋଲି କାଳିନ୍ଦୀ ଜଳେ ପ୍ରବେଶ ।
ମହାଭୟଙ୍କର କାଳମାୟା ପ୍ରକାଶ । ୭୯ ।

ସେହିଠାରୁ ଏଣିକି ତାହାର ବିହାର ।
ତା ଚରଣଧୂଳି କେହି ନୋହେ ବାହାର । ୮୦ ।

ଯେ ଯେତେ ହୋଇଲେ ତାହା ଭିତରେ ଖେଳି ।
ଜାତ୍ୟମଣ୍ଡଳକୁ ବେଢ଼ି ହୋଇଛୁ ବେଢ଼ି । ୮୧ ।

ସ୍ୱର୍ଗ ମର୍ତ୍ତ୍ୟ ପ୍ରାୟେ ତାର ବିସ୍ତାର ତୁଣ୍ଡ ।
ବ୍ରହ୍ମାଣ୍ଡ ଖଣ୍ଡକୁ ଜାଣି ବୃଷାଳ ମୁଣ୍ଡ । ୮୨ ।

ଜଭ ଯାର କୋଟି କୋଟି ବ୍ରହ୍ମାଣ୍ଡ ଗୁଳେ ।
ବିକଟ ଦର୍ଶନ ମେରୁ ମନ୍ଦର ତୁଲେ । ୮୩ ।

ପ୍ରଚଣ୍ଡ ବଳଣ ମହାଭୁଜ ବିସ୍ତୀର୍ଣ୍ଣ ।
ଠାରେ ଥାଇଁ ଘାଅ କରେ ସର୍ବଭୁବନ । ୮୪ ।

ନଖ ଉଖ ଲକ୍ଷ ଲକ୍ଷ ଯୋଜନ ହସ୍ତେ ।
ଭୟେ ଯମ ପ୍ରାଣ ଦିବ ନପୁଂନଖାପେ । ୮୫ ।

ବିକଟ ବଦନ ଦେଖି ଦେବୀ ରୁକ୍ମିଣୀ ।
ମହାଭୟ ହୃଦୁଜାଳ ନୃପଦୁଲଣୀ । ୮୬ ।

କାଣ୍ଡୋଳ ପ୍ରମାଣେ ଦେବୀ ସଙ୍କୋଚ ଗଲେ ।
ପ୍ରଭୁ ବାମ ଭୁଜମୂଳ ତଳେ ଲୁଚିଲେ । ୮୭ ।

ଶ୍ରୀକୃଷ୍ଣଙ୍କ କାଲାମ୍ଭାୟା ଗରୁଡ଼ ଚିହ୍ନିଲା ।
ବୈଷ୍ଣବମୂରତ ହୋଇ ପଥ ଛାଡ଼ିଲା । ୮୮ ।

ପତଙ୍ଗବର ଉଡ଼ାଇ ସେଠାରୁ ଗଲେ ।
ଅଷ୍ଟବଙ୍କ ନିକଟେଣ ବଜସ୍ତେ ଜଲେ । ୮୯ ।

ପାରଜାତ ତରୁମୂଳେ ପଶ୍ଚିମ ଦ୍ୱାରେ ।
ଦ୍ୱାରକା ସମୁଦ୍ର ମୂଳ ସ୍ଥାନ ସେଠାରେ । ୯୦ ।

---

୮୪—୧ :—ପ୍ରଚଣ୍ଡ ବଳିଷ୍ଠ ଭୁଜଦଣ୍ଡ ବିସ୍ତୀର୍ଣ୍ଣ ( କ, ଚ );
୮୭—୨ : - ମୂଳେ ଲୁଚି ରହିଲେ (ଗ); ଯିବେ ଦେ ଦେ ନ ହେଲେ (ଚ,ଙ)

ତ୍ରିଗୁଣାତୀତ ଏତ ନିର୍ଗୁଣ ମୂର୍ତ୍ତି ।
ଆଦ୍ୟମୂର୍ତ୍ତି ବାସୁଦେବ ସେ ସ୍ଥାନେ ସ୍ଥିତ । ୯୧ ।

ଅଶେଷ କୋଟି ଦ୍ୱାରକା ବୈକୁଣ୍ଠ କୋଟି ।
ଏହୁ ସ୍ଥାନ ଅଂଶାଅଂଶୁ ଜାତ ହୋଏଟି । ୯୨ ।

ଉତ୍ତର ଉଦ୍ୟାନମଧ୍ୟେ ହରିଚନ୍ଦନ ।
ସଙ୍କର୍ଷଣବ୍ୟୂହ ପକ୍ଷୀ ଦେଖ ଲୋଚନ । ୯୩ ।

ପ୍ରାଚୀ ଦଶେ ସନ୍ତାନ ସ୍ଥଳରେ ବସନ୍ତ ।
ରତି-କାମଦେବବ୍ୟୂହ ଦଶ୍ୟ ମୂରତି । ୯୪ ।

ଦକ୍ଷିଣେ ଉଦ୍ୟାନ ପଞ୍ଚ ଗହନ ବନ ।
ଉଷା ଅନିରୁଦ୍ଧ ସୁରତରୁ ମଣ୍ଡଳେ । ୯୫ ।

ଏଠାରୁ ଏଣିକି ପକ୍ଷୀ ନିତ୍ୟ ବିହାର ।
ମୂଳ ରାଧା ମୂଳ ଗୋପୀ ମୂଳ କିଶୋର । ୯୬ ।

ସେ ସ୍ଥଳ ମହିମା କିସ କହିବା ସହି ।
ବଚନ ଲୋଚନ ମନ ନ ଗମେ ତହିଁ । ୯୭ ।

ନିରନ୍ତରେ ଦେବ ଆଶା ତହିଁ ରହିଲା ।
ଶ୍ରୀଗୁରୁଚରଣ ଶିରେ ଧରି ଧାଇଲା । ୯୮ ।

ଇତି ଶ୍ରୀ ରହସ୍ୟମଞ୍ଜରୀ ଦ୍ୱାଂଦଶ ଛନ୍ଦେ, ।
ସକଳାସ୍ୱାଦ ବୈକୁଣ୍ଠ ଆଦ୍ୟରୂପ କନେ ॥
ଅଷ୍ଟବଂଶ ଗ୍ରନ୍ଥ ବର୍ଣ୍ଣିନେ କେବଣ କେବଣ ସମ୍ବାଦ,
କହିବାକୁ ଆଜ୍ଞା ହୋଉ ଏଥର ଯେ ଆସ୍ୱାଦ । ୨୨ ।



୯୩—୨ :—ଉହ ( କ, ଖ, ଚ ), ୯୪—୨ : ଭର—(କ,ଖ,ଚ)

# ତ୍ରୟୋବିଂଶ ଛାନ୍ଦ ।



## ରାଗ ବସନ୍ତ ଦେଶାକ୍ଷ

ଶ୍ରୀଧର ବଚନ ଶୁଣି ଗୋପଙ୍କ ବାଳୀ ।
କ୍ରୋଧେ ଜର୍ଜ୍ଜରର ଶୋକ ନୋହେ ସମ୍ଭାଳି । ୧ ।
ଏବେ ସେ ଜାଣିଲୁ ପ୍ରଭୁ ତୁମ୍ଭର କଥା ।
ଏକାବେଳେ ଛନ୍ଦାଇଲ ସବୁ ସେନେହ । ୨ ।
ନନ୍ଦୀ ସେ ବୋଇଲ ସେ ତ ତୁମ୍ଭର ଭାବ ।
ଜାଣେ ତଣ୍ଡି ଅଟିଣ ଲକ୍ଷଣ ଏ ଠାବ । ୩ ।
ଗୋପର ଗୋପୀ ଅଛିବେ ସେ ଯାହା ଘର ।
ଜାଣେ ତ ନ ଥିବୁ ଅମ୍ଭେ ତୁମ୍ଭ ସଙ୍ଗର । ୪ ।
ବାସୁଦେବମୂର୍ତ୍ତି ନନ୍ଦସ୍ଥଳେ ତ ନାହିଁ ।
ଯେ ସ୍ଥଳେ ତୁକ୍ଷ ଶୀଘ୍ରେ ପଠାଇବୁ ତାହିଁ ।
ନନ୍ଦେ ଜାଣିଲୁ ଅମ୍ଭେ ସଂସାର ସଙ୍ଗ
ସଂସାରେ ଲଭିବ କାହ୍ନୁ ପରମ ସଙ୍ଗ । ୫ ।
ଯେ ଯାହାର ସେ ତାହାର ଜାଣେ ହୋଇଲ ।
ଅଗ୍ନିକୁଆ ସଙ୍ଗ ଗୋଟି ପଞ୍ଝ ରହିଲ । ୬ ।
ଏତେ କହି କ୍ରୋଧ ଦେଖି ବହୁତ କଲେ ।
ତତକ୍ଷଣେ ସମ୍ଭାଳି ଦମ୍ଭ ହୋଇ କହିଲେ । ୮ ।
ବୋଇଲେ ତ ସେ ହୋଇଲା ହୋଇଲା କଥା ।
ଜାଣିଲେ ଜାଣିବ କେହୁ ହୃଦର ବ୍ୟଥା । ୯ ।
ତଥାପି ନନ୍ଦନନ୍ଦନେ ପୁଚ୍ଛଇ ମୁହିଁ ।
ତୁମ୍ଭେ ଯେ ଅଛିବ ମୋତେ କାହାକୁ ଦେଇ ।

---

୬-୨ ଅଗ୍ନିକୁଆ ( କ ) ଅଗୋଳିଆ । ( ଚ ) ।

ଆମ୍ଭେ ତ ତୁମ୍ଭର ସଙ୍ଗ ନୋହୁଁ ଗୋସାଇଁ ।
କି ଅର୍ଥେ ମିଛକୁ ମୋହ ଅଛ ଲଗାଇ । ୧୧ ।
ତୁମ୍ଭ ମାୟା ଦେଖି ମୋତେ ଲାଗିଲା ଭୟ ।
ଏଥକୁ ଆମ୍ଭର କିଛୁ ନାହିଁ ଉପାୟ । ୧୨ ।
ସର୍ବସଙ୍ଗ ତୁମ୍ଭେ, କାଳେ କାହାର ନୁହ ।
ଖେଡ଼ ସଙ୍ଗ ତେଜି ତୁମ୍ଭେ ବଲଗେ ରହ । ୧୩ ।
ଶ୍ରୀହରି ବୋଇଲେ ସଖି ନୁହଇ ଏହା ।
ସର୍ବଦା କାଳରେ ଆମ୍ଭେ ତୁମ୍ଭର ନାହା । ୧୪ ।
ତୁମ୍ଭେ ଯହିଁ ଥିବ ଆମ୍ଭେ ତହିଁ ପ୍ରମାଣ ।
ତୁମ୍ଭ ଆମ୍ଭ ନାନାକାର ଶରୀର ଜାଣ । ୧୫ ।
ଏତେ ବୋଲି ଗୋଲକ ମଣ୍ଡଳ ଜଣିଲେ ।
ଶ୍ରୀ ପୁରେଶ୍ୱରଙ୍କ ଦ୍ୱାରେ ଯାଇଁ ମିଳିଲେ । ୧୬ ।
ଦୁହୁଁ ବାହନ ତେଜି ଦର୍ଶନ କରି ।
ଶ୍ରିୟାକର ଧରି ହଲ୍ଲ ହୋଏ ମୁରାରି । ୧୭ ।
ଦେଖିଣ ହସିଲେ ନିତ୍ୟତତ୍ତ୍ୱକାରିଣୀ ।
କି ଅର୍ଥେ ଆଇଲ ବନ୍ଧୁ, ସଙ୍ଗେ ରମଣୀ । ୧୮ ।
ଶ୍ରୀ ହରି ବୋଇଲେ ଶୁଣ କୃପାକଟାକ୍ଷି ।
ସର୍ବ ଗର୍ଭବାରତା କି ଓହାଡ଼େ ଅଛୁ । ୧୯ ।
ବିଦର୍ଭରାଜ୍ୟର ରାଜକୁଳପ୍ରସୂତା ।
ମମ ପ୍ରାଣ ପରସ୍ୱେଣ ଏ ନିଜ କାନ୍ତା । ୨୦ ।
ତୁମ୍ଭ ଶ୍ରୀଚରଣେ ନିତ୍ୟ ଇଚ୍ଛନ୍ତି ଭକ୍ତି ।
ଶ୍ରୀରାଧାପାଦପଙ୍କଜ ଦର୍ଶନେ ମତି । ୨୧ ।

---

୧୦—୧:—ସର୍ବଦା କାଳରେ ତୁମ୍ଭେ କାହାର ନୁହ ( କ, ଙ ),
୧୦—୨:—ଖେଡସାର ସଙ୍ଗ ତେଜି ବଲଗେ ରହ ( ଚ ) ।
୧୯—୨:—ଉବାର ଅଛୁ ( କ, ଖ ) ।

ଏହି ପୁରୀ ବୋଇଲେ ବସ୍ତ୍ର କହିଲୁ ଯାହା
ନ କହୁଁ ଆଗହୁଁ ଆମ୍ଭେ ଜାଣୁଁ ନ ତାହା । ୨୨ ।
କୋଟି ବୈକୁଣ୍ଠରେ କୋଟି ଲକ୍ଷ୍ମୀ ମୁରତି ।
କୋଟି ବ୍ରହ୍ମାଣ୍ଡରେ କୋଟି ରୁକ୍ମିଣୀସ୍ଥିତି । ୨୩ ।
କାହିଁ କେତେ ଛନ୍ତି ଏଥା ଗଣିତା ନାହିଁ ।
ରାଧାଙ୍କ ଦର୍ଶନ ଏଥୁ ପାଇବ କାହିଁ । ୨୪ ।
ଏକ ବ୍ରହ୍ମାଣ୍ଡର ବଳଭଦ୍ର ମୂରତି ।
କେବେଳେ ବନ୍ଧୁତ ମୋତେ କଲ ଭଗତି । ୨୫ ।
ତାହାର ଆରତ ଦେଖି ଯେମନ୍ତ ଗଲି ।
ମନ୍ତ୍ରବଳେ ଅଙ୍ଗ ତାର ପାଲଟ କଲି । ୨୬ ।
ତେବେ ସେ ଅଙ୍ଗ ତାହାର ଶକ୍ତି ପଡ଼ିଲା ।
ପ୍ରିୟମଦା ସଖୀ ତାହା ଦେଖି ବାଇଲା । ୨୭ ।
ମାୟା କର ତଳେ ତାକୁ ଅଗଲି ଘୁଣ୍ଡି ।
ଏପ୍ରକାରେ କେତେ ତୋତେ କହିବା ଫେଡ଼ି । ୨୮ ।
କୋଟି ବାସୁଦେବ ଶିବ ସ୍ୱୟମ୍ଭୂ ମୂର୍ତ୍ତି ।
ଏ ଦ୍ୱାରକୁ ଏମାନେ ଗଣିତା ନୁହନ୍ତି । ୨୯ ।
କେବଳ କଥାଏ ଅଛୁ ଅତି ଗୁପତ ।
ଜଗତେ ଅଗମ୍ୟ ଗୁରୁମୁଖେ ବ୍ୟକତ । ୩୦ ।
ଶ୍ରୀଗୁରୁଚରଣେ ଯେବେ ଧାରଇ ସେବା ।
ତାହାଙ୍କ ପ୍ରସନ୍ନେ ବସ୍ତ୍ର ଏ ସୁଖ ଲଭ । ୩୧ ।
ଦର୍ଶନ କରିବା ଶକ୍ୟ ଯାହାର ହୋଇ ।
ଆଉ କି ସେ ଜନ ଏଥିଁ ବାହୁଡ଼ି ଯାଇ । ୩୨ ।
ଯାକୁ ଯେଉଁ ଅଧିକାର ଆଜ୍ଞା ହୋଇଛି ।
ସେ ଯାହା ଶଙ୍କୁଡି ବନ୍ଧ ବାନ୍ଧ ରହିଛି । ୩୩ ।

ଏ କଥା ମହାନିତ୍ୟକୁ ଲେଡ଼ାଇ ଆସି ।
ସର୍ବଦା ହୃଦରେ ଏ ବୈକୁଣ୍ଠ ବିଳାସୀ । ୩୪ ।

ତୁମ୍ଭେ ଯେ ଶ୍ରୀକୃଷ୍ଣ ନାଥ ନିତ୍ୟ ମୂରତି ।
ଷି ଗୁଣେ କିଶୋରରୂପ ନିର୍ଗୁଣେ ଅଛି । ୩୫ ।

କଲ୍ପଣା ଅଂଶରୁ ହର ମନ୍ତ୍ରୀଙ୍କୁ ଗଲ୍‌ ।
ରାଧାଙ୍କ କଲ୍ପନା ଅଂଶ ସଙ୍ଗରେ ନେଲ୍‌ । ୩୬ ।

ତେତେବେଳେ ଏ ସଙ୍ଗ ତୋ କାହ୍ନୁଁରେ ଥିଲ ।
ଛଣେକ ସଙ୍ଗକୁ ସଙ୍ଗ ମୋହୋର କଲ । ୩୭ ।

ରାଧା କୃଷ୍ଣ ବେନି ତୁମ୍ଭେ ଗୋପକୁ ଗଲ ।
ନିତ୍ୟଲୋକ ଲୀଳା ଅଂଶ ସଙ୍ଗକୁ ନେଲ । ୩୮ ।

ସହୁଁ ଯେତେ ଲୀଳାଅଂଶ ବୈକୁଣ୍ଠ ଆଦି ।
ପୁରୁଷ ପ୍ରକୃତି ଅଂଶ ଘେନିଲ ଶୋଧି । ୩୯ ।

ବସ୍ତୁ ବାସୁଦେବ କଳା ରୁକ୍ମିଣୀ ଅଂଶ ।
ଲକ୍ଷ୍ମୀ କଳାମାନ ଘେନି ହେଲେ ପ୍ରକାଶ । ୪୦ ।

ରାଧାକୃଷ୍ଣରୂପେ ଗୋପେ କ୍ରୀଡ଼ା ବହିଲ୍‌ ।
ବସ୍ତୁ ଅଂଶ କଳା ଘେନି ଦ୍ୱାରକା ଗଲ୍‌ । ୪୧ ।

ଏ ସବେ ସକଳଲୀଳା ତୋହୋର ଅଙ୍ଗ ।
ଆସିବା ବେଳକୁ ତୋର ରାଧିକା ସଙ୍ଗ । ୪୨ ।

ଏଥୁଁ ଯେତେ ଘେନିଗଲ୍‌ ତେତେ ଆଣିବୁ ।
ଅସୁଲ ଲୋକଙ୍କୁ ଆଣି କାହ୍ନୁଁ ଗଣିବୁ । ୪୩ ।

ସହୁଁ ଯାହା ନେଇଅଛୁଁ ତହୁଁ ଛାଡ଼ିବୁ ।
ନିତ୍ୟଅଂଶ ଘେନି ନିତ୍ୟଅଂଶେ ଜଡ଼ିବୁ । ୪୪ ।

---

୪୩ — ୨;—ଗକୁଳ ଲୋକଙ୍କୁ ( ଚ ); ଅଙ୍କୁଳ ( କ, ଘ )

ତେତେବେଳେ ତୁ ବିନା ଗୁରୁକୃପା ନ କଲେ ।
ଲଭି ନ ପାରନ୍ତି ବସ୍ତୁ ଏ ମାନ ଭଲେ । ୪୫ ।
ରୁକ୍ମଣୀ ଶୁଣିଲେ ଯହୁଁ ଅମୋଘବାଣୀ ।
ଜଳା ଗଳାଗଲେ ଗାଲଭଗ୍ନଳ ଜାଣି । ୪୬ ।
ବଦନ୍ତି ମାଧବ ଶୁଣ ଅଖିଳମାତ ।
ତୁମ୍ଭେ ସେ ନିପୁର ଗୁରୁ ସବଗୁରୁକୃତ । ୪୭ ।
ମନ୍ତ୍ର ଯନ୍ତ୍ର ତନ୍ତ୍ର ଭେଦ ତୁମ୍ଭେ କହିବ ।
ରୁକ୍ମଣୀ ଦେବୀଙ୍କ ସ୍ତୁତିକାର ବହିବ । ୪୮ ।
ଏ ମୋର ପ୍ରାଣର ପ୍ରିୟା ହୃଦସ୍ଥରହି ।
ନିରନ୍ତରେ ଏହୁ ମୋର କରନ୍ତି ସହି । ୪୯ ।
କେବେହେଁ ମହତ ସତ୍ୟ ନୋହିଲ ଭଙ୍ଗ ।
ତେଣୁ କରି ଲୋଡୁଥାଇଁ ସୁଜନ ସଙ୍ଗ । ୫୦ ।
ପ୍ରସନ୍ନ ହୋଇଲେ ଶୁଣି ନିଜଗତମାତ ।
କୃପା କଲେ ମନ୍ତ୍ର ଯନ୍ତ୍ର ସକଳ ତନ୍ତ୍ର । ୫୧ ।
ଆଜ୍ଞା ଦେଲେ ରୁକ୍ମଣୀଙ୍କି ଏ ତନ୍ତ୍ର କହ ।
ଦ୍ୱାରକାରେ ଗୁରୁ କରି ଏହାଙ୍କୁ ଥୁଅ । ୫୨ ।
ଦ୍ୱାରକା ପୁରବାସୀଏ ଏହା ଚରଣେ ।
ଶିଷ୍ୟପଣେ ରହିଥିବେ ସବୁ କାରଣେ । ୫୩ ।
ମନ୍ତ୍ରୀ ଗୋପୀ ରାଧାଙ୍କ ଏ ଅନନ୍ତ ବୃନ୍ଦ ।
ମନ୍ତ୍ରସିଦ୍ଧ କରିବେ ସେ ରୂପକୁ ଧାୟି । ୫୪ ।
ଏତେ କହି ଅନ୍ତର୍ଦ୍ଧାନ ହୋଇଲେ ମାତ ।
ଫିଟିଲା ସକଳ ସନ୍ଧି ରୁକ୍ମଣୀ ଚିତ୍ତ । ୫୫ ।

---

୪୬—୨:—କାଳୀ କି ଘଟିଲେ ( କ, ଖ ) "ଜଣି" ମଧ୍ୟ ହୋଇପାରେ ସ, ।
୫୦—୯:— ମହତ୍ତ୍ୱ ( କ, ଖ, ଘ ) । ୫୧—୧:—ନିଗୁରମାତ (କ, ଖ) ।

ପ୍ରାଣଭରୁ ପଣ୍ଡୁକଲ ରମଣୀ ମଣି ।
ମୂର୍ଚ୍ଛାସ୍ଥୁରେ ବରଷିଲ୍ଲ ଅମୃତ ପାଣି । ୫୬ ।

ଗରୁଡ଼ ପିଠିରେ ବସେ ଶ୍ରୀଜଗନ୍ନାଥ ।
ବାହୁଡ଼ା ବଳସ୍ୱେ ପ୍ରଭୁ କଲେ ତୁରିତ । ୫୭ ।

ବାମଜାନୁ ପରେ ବାମା ବସାଇ ହରି ।
ଆନନ୍ଦେ ମିଳିଲେ ଦେବ ଦ୍ୱାରକାପୁରୀ । ୫୮ ।

ଶ୍ରୀଜଗନ୍ନାଥଙ୍କ ଶ୍ରୀଚରଣରେ ଆଶା
ନିରନ୍ତରେ ଚନ୍ତେ ଦେବଦୁର୍ଲ୍ଲଭ ଦାସ । ୫୯ ।

ଇତି ଶ୍ରୀ ରହସ୍ୟମଞ୍ଜରୀ ତ୍ରୟୋବିଂଶ ଛାନ୍ଦେ,
କି ପୁରୀ ବାସୁଦେବ ପରମସଂବାଦ ବନ୍ଧେ ।
ଚତୁର୍ବିଂଶ ଛାନ୍ଦ ବର୍ଣ୍ଣିନେ କେବଣ କେବଣ ସନ୍ଦେଶ,
କହିବାକୁ ଆଜ୍ଞା ହୋଇ ମୋତେ ହୃଷୀକେଶ । ୨୩ ।



## ଚତୁର୍ବିଂଶ ଛାନ୍ଦ ।

ରାଗବରାଡ଼ି—କଳଶା ବାଣୀରେ ଗାଇବ ।

ଏଥୁ ଅନନ୍ତରେ କଥା ଶୁଣ ସାଧୁଜନ ।
ହାଲେହୋଳ ପଡ଼ିଅଛି ଦ୍ୱାରକା ଭୁବନ ।
କେ ବୋଲଇ ସବୁ ଅଛି କୃଷ୍ଣ କେଣେ ଗଲେ ।
ରୁକ୍ମିଣୀଦେବୀଙ୍କି କପା ଏକା କରି ନେଲେ । ୧ ।

---

ରାଗ କଳଶା :—( କ, ଖ, ଘ, ),

କେବଣ କାର୍ଯ୍ୟେଣ ଗଲେ ନ ଜାଣିଲେ କେହୁ ।
ଏତେ ବଡ଼ ସମ୍ପଦ ତେଜିଲେ କାସ ପାଇଁ ।
ମନର ସୁବସ୍ତ ଏ ତ ଅଟନ୍ତି ସମସ୍ତ ।
ସୁଖେ ଯେବେ ଯାଆନ୍ତେ, କହନ୍ତେ ଜଣେ ମାତ୍ର । ୨ ।
କେ ବୋଲଇ ଏ ଯେବେ ହୋଅନ୍ତେ ମନସର
ରୁକ୍ମିଣୀଙ୍କି କାହିଁ ସେ ନଥନ୍ତେ ଏକା କରି ।
ତାଙ୍କୁ ଘେନି ଏକା ହୋଇ ଜଗମେ ରମିବେ ।
ଅଚନ୍ତା ଆନରେ ରହି ନଚନ୍ତେ ରମିବେ । ୩ ।
କେ ବୋଲଇ ଗଲେ ସେ ସମସ୍ତ ବହୁସଙ୍ଗ
ରହିଲେ କେବଣ ଆନେ ବାରତା କୋହିଲ ।
ସର୍ବଠାକୁରାଣୀମାନେ ଝୁରି ଝୁରି ଖୀଣ
ନିରନ୍ତରେ ଲୋତକ ବହଇ ଘନଘନ ।
ନେଜିଲେ ଭୋଜନ ପାନ ସର୍ବ ସୁଖଶେଯା
କର୍ପୂର ଚନ୍ଦନ ବାସ ପୁଷ୍ପ ସରେତେଜ୍ୟା ।
ସଭ୍ରୁଁ ଅଧିକ ଶୋଲ ସତ୍ୟଭାମା ଝୁରେ
ଛଣେ ଛଣେ ଅନୁଆନ ବାରତା ପ୍ରଚରେ । ୪ ।
କେ ବୋଲଇ ସତ୍ୟଭାମା ଛାଡ଼ିବେକ ଜୀବ
କେ ବୋଲଇ ଏତେବେଳଯାଏ କାହୁଁ ଥିବ ।
ସହିଲେ ଶ୍ରୀକୃଷ୍ଣ ସତ ଅଟଇ ଯାହାର
ବିଚ୍ଛେଦେ ଜୀବନ ଦିବା ଉଚିତ କ ତାହାର । ୫ ।
ସତ୍ୟଭାମାମୁଖ ଝୁରି ମୂର୍ଚ୍ଛିଲେ କେତେକ
ସଢଶ୍ରୋଭା ଯାର ଦେହ ଧରେ କେତେ ଦିନ ।
ପ୍ରଦ୍ୟୁମ୍ନଙ୍କର ଏହୁ ହଟକ ବେଭାର
କଲେହିଁ କରନ୍ତୁ ସେ ଗୋ ଏମନ୍ତ ଆଗ୍ରହ । ୬ ।

---

୩—୪;—ଅଚନ୍ତ (କ, ଖ, ଘ) । ୫—୩ :—ହାଏ ହେତେ (ଗ, ଚ)

ଜନମୁଖେ ଏସନ ବାରତା ପ୍ରଭୁ ଶୁଣି ।
ଅନ୍ତେଶ୍ୱରପୁରେ ନେଇ ଛାଡ଼ିଲେ ରୁକ୍ମିଣୀ ।
କଶ୍ୟପସୁତଙ୍କୁ ଆଜ୍ଞା ଦେଲେ ହୃଷିକେଶି
ହମ୍ଭୁ ସ୍ତ୍ରୀ ରହୁଣି ଅଧ ହୋଇଲାକ ନିଶି । ୮ ।
ପ୍ରଭୁ ବିଚାରନ୍ତି ଏବେ କି ବୁଦ୍ଧି କରିବା ।
କେବଣ ପ୍ରକାରେ ତାଙ୍କ ବେଦନା ହରିବା

ଏତେ ବୋଲି ଆପଣେ ଅଦୃଶ୍ୟରୂପ ଧରି
ଗହନେ ପଶିଲେ ଯାଇଁ ସତ୍ୟଭାମା-ପୁରୀ । ୯ ।
ପୂର୍ଣ୍ଣଚନ୍ଦ୍ର ପ୍ରିୟବନ୍ଧୁ ନ ଦିଶଇ ସନ୍ଧ
ରହିଲେ କି ବହିବା ନିମନ୍ତେ ନାନାବିଧ
କେହୁଣି ପ୍ରକାରେ ଦେଖି ନ ବସିଲ ଗ୍ୟାନ
କେବଳ ରହିଛୁ ଏକା କୃଷ୍ଣ ତହିଁ ଧ୍ୟାନ । ୧୦ ।

ଅଦୃଶ୍ୟ ରୂପରେ ଗଲେ ଶ୍ରୀହରି ମିଳିଲେ
ସତ୍ୟଭାମା ଆଗେ ଯାଇ ଚାମର ଢାଳିଲେ ।
ଶ୍ରୀଅଙ୍ଗ ସୌରଭ ପାଇ କୃଷ୍ଣପ୍ରାଣପ୍ରିୟା
ଚମକି ଉଠିଲେ ଦେଖି ଉଲ୍ଲସଇ ହିୟା । ୧୧ ।
ଅନାଗେ ଅନାଇଁ ଦେଲେ ଶ୍ରୀକୃଷ୍ଣର ମୁଖ
ନୟନ ଭୁଞ୍ଜଣ ଦେଖି ଜନ୍ମାଇଲେ ଶୋକ
ଚାମର ପକାଇ ଦେଇ ପ୍ରଭୁ ବନମାଳୀ
ସତ୍ରାଜିତଜେମାକୁ ଧଇଲେ ହୃଦେ ତୋଳି । ୧୨ ।

---

୧୦-୨-ବୁଦ୍ଧି ( ଖ, ଗ ) ୧୧-୧ :-ଶ୍ରୀକୃଷ୍ଣ ପଶିଲେ ( ଗ, ଚ ) ୧୨-୩:
ଛାଡ଼ିଦେଇ ବନମାଳୀ ( କ, ଖ ) ।

ତାହା ଦେଖି ଅନ୍ତର ହୋଇଲେ ସବନାରୀ
ଅନ୍ତଃପ୍ରାନ୍ତ ମାର୍ଗ କେତେ ବୋଇଲେ ସୁନ୍ଦରୀ ।
ଶ୍ରୀହରି ବୋଇଲେ ସଖି କହଇ ମୁଁ ଆଗ
ଦୋଷ ଥିଲେ ଦଣ୍ଡ କରି ରୋଷ ପରିତ୍ୟାଗ । ୧୩ ।

ବୁଝାଇ କହିଲେ ସବୁଁ ସକଳ ବେବସ୍ଥା
ଶୁଣି ଗୁଡ଼ିଗଲା ଦେବୀ ମନୁଁ ମାନବ୍ୟଥା ।
ଆନନ୍ଦେ ଭିଡ଼ିଲେ ଧରି ଶ୍ରୀହରି ଶ୍ରୀଅଙ୍ଗ
ବଢିଲା ପୀରତି ଅତି ସୁରତିପ୍ରସଙ୍ଗ । ୧୪ ।

ପ୍ରିୟ ପ୍ରିୟା ସମାଗମେ ପାହିଲା ରଜନୀ
ବିବିଧ ବିନୋଦେ ଦେବ ତୋଷିଲେ ରମଣୀ ।
ସତ୍ୟଭାମା ରୁକ୍ମିଣୀଙ୍କ ମୂଳେ ଦେଲେ ନେଇ
ରତ୍ନସିଂହାସନେ ପ୍ରଭୁ ବିଜେ କଲେ ଯାଇଁ । ୧୫ ।

ସତ୍ୟଭାମା ରୁକ୍ମିଣୀଙ୍କି ଏକ ପ୍ରୀତି କରି
ବାମଜାନୁ ଉପରେ ବସାଇ ଯୁଗ୍ମନାରୀ ।
ଯୁବା ଯୁବତୀଙ୍କି ମନ୍ତ୍ର ଶ୍ରବଣେ କହିଲେ
ସତ୍ୟଭାମା ରୁକ୍ମିଣୀ ଯେ ଶ୍ରୀଗୁରୁ ହୋଇଲେ । ୧୬ ।

ଆଉ ଯେତେ ସୁବତୀ ରୁକ୍ମିଣୀ ମୂଳେ ଦେଇ
ତାହାରେ ବିଜୟେ କଲେ ଅଖିଳଗୋସାଇଁ ।
ରୁକ୍ମିଣୀ ଶ୍ରୀଚରଣେ ସମସ୍ତେ ସେବା କରି
ମନ୍ତ୍ର ଉପକରଣ ହୋଇଲେ ଶ୍ରୁତି ଭରି । ୧୭ ।

ମନ୍ତ୍ର ଯନ୍ତ୍ର ଭେଦ ସନ୍ଧି ନାନା ଉପଚାର
ସଞ୍ଚରନ୍ତ ନାରୀ ସବ ବିବିଧ ପ୍ରକାର ।

---

୧୩-୨: ଅନ୍ତଃପ୍ରାନ୍ତ (ଘ) ଆକର୍ଣନ୍ତା (ଗ)

ଯହୁଁ ଯାହା ପଢ଼ିଲ ସେ ମନ୍ତ୍ର ହୋଇଗଲେ
ଯହିଁ ଯାହା ଦେଖିଲେ ତା ସମସ୍ତ କହିଲେ । ୮ ।

କୃତାର୍ଥକାରିଣୀ ତୁମ୍ଭେ ପରମ ଈଶ୍ୱରୀ ।
ଭାସିଗଲ ଭେଳା ତୁମ୍ଭେ ଧଇଲ ଉଦ୍ଧରି ।
ଶୁଣି ସ୍ତମ୍ଭୀଭୂତ ସେ ହୋଇଲେ ହବନାସ୍ତି
ବୋଇଲେ ଏ କଥା କାହା ବେଳେ ହୋଏ କହି । ୧୯ ।

ତୁମ୍ଭର ପ୍ରସାଦୁଁ ଉପଦେଶ ହୋଇ ଖ୍ୟାତ
କି ଜଗକାରିଣୀ ତୁମ୍ଭେ ଅଗ୍ନିଆତର ଗଁ୍ୟାତ ।
ଗୁରୁ ବଇଷ୍ଣବ ରାଧାକୃଷ୍ଣ ସେବାକାର୍ଯ୍ୟ ।
ତୁମ୍ଭର ପ୍ରସାଦେ ସବ ଧର୍ମ ହେଲ ସିଦ୍ଧି । ୨୦ ।

ଏତେ କହି ଶ୍ରୀଚରଣେ ନମିଲେ ସୁନ୍ଦରୀ
ଆନନ୍ଦେ ରହିଲେ ସବେ ଦ୍ୱାରକାନଗରୀ
ଏ ଭବସାଗରୁ ମୋତେ ଉଦ୍ଧାରଣ ନେମା
ଅଧମ ଉଦ୍ଧାରଣ ସେ ତୁମ୍ଭର ମହିମା । ୨୧ ।

ଜୟ ଜୟ ଜଗନ୍ନାଥ ଅନାଥର ନାଥ
ସନକନନ୍ଦନର ଭଜେ ଆତ୍ମାତତ୍ତ୍ୱ ।
ଏଥିଅନନ୍ତରେ ସନ୍ତ ସମସ୍ତେ ଶୁଣିମା
ଅଧମଉଧାରଣ ସେ ପ୍ରଭୁଙ୍କ ମହିମା । ୨୨ ।

ତୁମ୍ଭେ କୃପାନିଧି ମୋର ଦୋଷ ନ ଘେନିମା
କେ ଅନ୍ତ କରି କହିବ ଶ୍ରୀହରିମହିମା ।
ଆଦି ଅନ୍ତ ମଧ୍ୟ ଶୋଧି ଘେନିମା ଏ ଗୀତ
ତେବେ ସେ ଜାଣିମା ଏଥି ସବରସ ତତ୍ତ୍ୱ । ୨୩ ।

---

୧୯—୨—ଅଗ୍ନିଆନର ଗଁ୍ୟାତ ( କ, ଖ ), ଅବସ୍ଥାତାମାତ ( ଚ ) ।

ରହସ୍ୟମନ୍ତ୍ରଗୀ ଏ ବିଚାରମସ୍ତ ଗ୍ରନ୍ଥ
ଏ ସୁଖ ଜାଣିମ ଯେତୁ ବିବେକ ପୁରୁଷ ।
ଅବିବେକ ବୋଲିବ ଏ କଉଁ ପାଠେ ଥିଲା
ଥିଲା ଯେବେ କବି କିପା ଆଗହୁଁ ନ କଲା । ୨୪ ।

ବିବେକୀ ବୋଲିବେ ଏ ରୂପରେ ଥିଲା ରହି
ସରସ୍ୱତୀ ଭଣ୍ଡାରେ ଗୁପତରେ ଥିଲା ଥୋଇ ।
ଯଉଁ ପୁଣ ବନ୍ଧିଲା ତାହାକୁ କଲେ ଦଣ୍ଡେ
ମହିମା ଅନନ୍ତ କେତେ କରିବା ନିର୍ଣ୍ଣୟେ । ୨୫ ।

ପାଠମାନେ ଯେବେ ଅନ୍ତ କରି କହିଥାନ୍ତେ
ମହିମା ଅନନ୍ତ ବୋଲି କିପାଁ ଲେଖି ଯାନ୍ତେ ।
କହି କହି କୋଟିକଲେଣ ନ ପାଇଲେ ଅନ୍ତ
ତେଣୁକରି କହିଗଲେ ମହିମା ଅନନ୍ତ । ୨୬ ।

ଏହି ମତ କେତେ କେତେ ଭଣ୍ଡାରେଣ ଥିଲା
କେତେ କେତେ କବିଙ୍କୁ ବାଣ୍ଟି ବାଣ୍ଟି ଦେଲା ।
ଏବେହେଁ ଭଣ୍ଡାରେ କେତେ କେତେ ପୁରିଥିବ
କଳ୍ପ କଳ୍ପାନ୍ତରେ କି ସେ ବଢ଼ିଲେ ସରିବ । ୨୭ ।

ଯେ ଯେତେ କହିଲା ତାର ତେତେକ ପ୍ରମାଣ ।
ଏତେ ଏତେ ବୋଲି ତଥି କେ କେ ମାନେ ଜାଣ
ଦେଲା ଲୋକ ଜାଣିଛୁ ଅଣିଲା ଲୋକ ଜାଣେ
ବିବେକୀ ଜାଣିମ ତାହା ମଧ୍ୟପାତପଣେ । ୨୮ ।

ଏ ତନ୍ନ ବେଣିକେ ସୁଖ ଜାଣିମାକୁ ନାହିଁ ।
ଅବିବେକୀ ଲୋକ ଏଥି ପଶିବ ଯେ କାହିଁ ।
ପଶିଲେ ତ ମିଶାଇ ମିଶିଇ ରହେ ଯେତୁ ।
ପାଠୁକ୍ୟ ବାଟଇ ସେ କହିବ ଅବା କାହୁଁ । ୨୯ ।

---

୨୯—୧:—ବିଚାରକେ ( କ, ଖ ) ବିଚାରକେ ( ଘ ); ବିଦେକେ, । ଦେକେ ମଧ୍ୟ ହୁଏ ।

ସଂସାରସାଗର ଏ ଅନନ୍ତ କୋଟି ମୁଖ
ସେ ଯେଣୁ ମଜଇ ସେ ତେଣୁ ମଜେ ସୁଖ ।
ସନ୍ତୋଷ ମହତ ଯେହୁ ସମୁଦ୍ର ପରାୟେ
ସମତାର ହୃଦର ସମସ୍ତ ପରିଚୟେ । ୩୦ ।

ଶୂରୁପା ପ୍ରାଏକ ସନ୍ତ ହୃଦର ଅଟଇ
ସେ ଯେହ୍ନେ ସୁଦ୍ରବ୍ୟ ରଖି କୁଦ୍ରବ୍ୟ ତେଜଇ ।
ଚାଲୁଣି ଜଳାଉ ପ୍ରାଏ ଅସନ୍ତର ଗର୍ଭ
ସୁଲଗି ପକାଇ ସେ ଅଲଗି ରଖେ ସର୍ବ । ୩୧ ।

ତାର ପ୍ରାୟେ ପର ଗୁଣ ଟଳାଇ ପକାଇ
ଅନ୍ୟ ଦୋଷ କୁର୍ଚ୍ଚି କରି ପସରି ଦେଖଇ ।
ସନ୍ତ କହେ ପରଗୁଣ ଆପଣାର ଦୋଷ ।
ଗୁରୁ ବଇଷ୍ଣବ ସେବା ନ ସହଇ ଲେଶ । ୩୨ ।

ମନୁଷ୍ୟ କୋଟିକେ ମିଳେ ଉତ୍ତମ ଜଣେକ
କୋଟିଏ ଉତ୍ତମ ଯାଇ ସାଧୁ ମିଳେ ଏକ ।
କୋଟି ସାଧୁ ମଧ୍ୟେଣବୈଷ୍ଣବ ଏକ ଜାଣ
କୋଟିଏ ବୈଷ୍ଣବେ ସେ ଲଭଇ ସନ୍ତ ପୁଣ । ୩୩ ।

ସନ୍ତ କୋଟିକେଣ ସେ ମହାନ୍ତ ଏକ ଜାଣି ।
ମହାନ୍ତ କୋଟିକେ ଏକ ମହାତ୍ମା ବଖାଣି ।
ଯେଉଁ ମହାତ୍ମା ସେହୁ ଜଗନ୍ନାଥ ସ୍ୱାମୀ
ସବୁ ଆତ୍ମା ତୁଲ ମୂଳ ଆତ୍ମା ଅନ୍ତର୍ଯାମୀ । ୩୪ ।

ଏତେକ ପ୍ରକାରେ ସନ୍ତ ମହାତ୍ମା ମହିମା
ସନ୍ତ ହୋଇ ନ ଭବଇ ଅହଙ୍କାର ସୀମା ।
ପର ଦୁଃଖେ ଦୁଃଖୀ ସନ୍ତ ପର ସୁଖେ ସୁଖୀ ।
ପରମକାରଣେ ସନ୍ତ ନୋହେ ମନ ଦୁଃଖୀ । ୩୫ ।

ହାନି ଲଭ ବସ୍ତୁର ସବତେ ଗରୁ ସାର
ତାହାର ଠାବରେ ସନ୍ତ ନୋହେ ଅବେସ୍ତର ।
ସବସୁଖ ମିଳଇ ପ୍ରାପତ ସନ୍ତ ସଙ୍ଗ
ସକଳ କଳୁଷ ନାଶ ଅସାଧୁ ପ୍ରସଙ୍ଗ । ୩୬ ।

ସବୁଙ୍କର ସନ୍ତ ବୁଦ୍ଧି ଯେବେ ସେ ହୁଅନ୍ତା
ଖଡ଼ଗ କମାଣ ବାଣ କପାଇଁ ବନ୍ଧନ୍ତା ।
ଏକକୁ ଆରେକ ନ ଚହ୍ଲନ୍ତ ମନ୍ଦସ୍ନେଲେ
ତେଣୁ ମତ୍ସର ହୋଇ ମରନ୍ତ ସକଳେ । ୩୭ ।

ନଖାସ୍ତ ନ ବୁଝନ୍ତ ସେ ବୁଝନ୍ତ ଅଜମିତେ
ମତ୍ତଗଜ ପୁରସ୍ତାରେ ମୋହ ଅନୁବ୍ରତେ ।
ଦେଖିବା ମାତ୍ରକେ ଭୟେ ଲାଗଇ ଯାହାକୁ
କେସନକେ ସନ୍ତ ବୋଲି ବୋଲିବା ତାହାକୁ । ୩୮ ।

କହିବାକୁ ଡର ତେଣେ ନ କହିଲେ ମର
ସୃଷ୍ଟି ନାଶଗଲ ପ୍ରଭୁ ବୁଝିବା ଚତୁର ।
ଏଥୁ ଉଦ୍ଧରଣ ପ୍ରଭୁ ବେଗେ ମୋତେ କଥ
ପଶ୍ଚାଲବ୍ଧେ ଥିଲେ ସନ୍ତ ପାଦତଳେ ଥୋଅ । ୩୯ ।

ଜୟ ଜୟ ଜଗନ୍ନାଥ ଜଗତର ନାଥ
ଦୀନଜନ ସୋଦର ଭଗତ ଆମ୍ଭ ତନ୍ତ୍ର ।
ଏ ଭବସାଗରୁ ପ୍ରଭୁ ପାର କର ମୋତେ
ଯାହୁ ଯାହୁ ଆରତେ ଫୁକାର ଡାକେ ତେତେ । ୪୦ ।

ଦୁର୍ଗମ ସଂସାର ଦେଖି ମହାଭୟେ କଲି
ଅହଙ୍କାରମତ୍ତରେ ରହି ନ ପାରିଲି ।

---

୩୮—୧:—ଅଜମିତ ( ଘ ); ଆଜମତେ ( ଗ )

ସମସ୍ତେ ବନ୍ଦନ୍ତୁ ସାଧୁ ସୁକୃତି ସନ୍ତକ
କାଳେ ସନ୍ଥ ଉପରକୁ ହୋଅନ୍ତୁ ଅନ୍ତକ । ୪୧ ।

ସବଂଗତ ଦେଖି ଦେଖି ହୋଇଲି ମଉନ
କେହୁଣି ପ୍ରକାରେ ମୋର ନ ଫଳିଲା ଧନ ।
ଶରଣତାରଣ ତୁମ୍ଭେ କରୁଣାବାରିଧି
ଏ ମୋହୋର ଆତଙ୍କ ଫେଡ଼ିବା କୃପାନିଧି । ୪୨ ।

ଅପରାଧ କ୍ଷମା କରି ଜଗିବା ପଦସ୍ତେ
ନିରନ୍ତରେ ଶ୍ରୀଚରଣେ କରଇଁ ନମସ୍ତେ ।
ଏତେକ ମାଗଇଁ ପ୍ରଭୁ ହୋଇବା ପ୍ରସନ୍ନ
ଜନ୍ମେ ଜନ୍ମେ ନୋହୁବ ମୋ ଅସାଧୁ ଦର୍ଶନ । ୪୩ ।

ପିତା ମାତା ପତ୍ନୀ ପୁତ୍ର ଅସାଧୁ ନୋହୁବ
ବନ୍ଧୁ ପ୍ରୀତି ପରିଜନ ଯେ ମୋର ହୋଇବ
ତୁମ୍ଭ ବିନୁ ସାଆନ୍ତ ମୋ ନୋହୁବଟି କେହୁ
ଦଣ୍ଡିଲେ ଦଣ୍ଡିବ ମୋତେ ଆପେ ସ୍ୱବଶାତ୍ମା । ୪୪ ।

ତୁମ୍ଭ ବିନୁ ଜଗନ୍ନାଥେ କେହୁ ମୋର ନାହିଁ
ରକ୍ଷି ମାରୁଅଛ କେତେ ଦୋଷ ମୋ ଚୋଯାଇଁ ।
କେଶ ଧରି ରଖ ନେଇ ଶ୍ରୀଚରଣତଳେ
ଅନାଥ ଦେବର ଫେଡ଼ ଦୁସହ ଆକୁଳେ । ୪୫ ।

ଇତି ଶ୍ରୀ ରହସ୍ୟମଞ୍ଜରୀ ଚତୁର୍ବିଂଶ ଛାନ୍ଦେ,
ରୁକ୍ମିଣୀ ସତ୍ୟଭାମା ବିବିଧ ବୋଧ ବନ୍ଧେ ।
ସମ୍ପୂର୍ଣ୍ଣ ରହସ୍ୟମଞ୍ଜରୀ ସୁପ୍ରେମଧାମ,
ଶ୍ରବଣେ ସୁଖ ଏ ଭକ୍ତଜନ ବିଶ୍ରାମ । ୪୬ ।



# ଟୀକା ।



ରହସ୍ୟମଞ୍ଜରୀ—ରାଧାକୃଷ୍ଣଲୀଳାର ଗୂଢ଼ତତ୍ତ୍ୱର ପ୍ରକାଶ ଯେଉଁ କାବ୍ୟର ବିଷୟ, ସେହି କାବ୍ୟ ।

---

## ପ୍ରଥମ ଛାନ୍ଦ ।

ଗାହା—ଗାଥା ( ସଂସ୍କୃତ ) ପ୍ରାକୃତଭାଷାରେ ଗୀତଚ୍ଛାନ୍ଦ । ୪:— ସଂକ୍ରମଣ—ସଂକ୍ରାନ୍ତି ୫:—ଉତ୍ସର୍ଗ—ଉନ୍ମୁଖ, ଇଚ୍ଛା । ୬:—ଭାସ୍କର—ସୂର୍ଯ୍ୟ ପଦ୍ମଘର—ପଦ୍ମା ଶେଷ ହେବାରୁ । ବିରଞ୍ଚି ସୂର୍ଯ୍ୟ । ଆନନ୍ଦଘଟେ—ସ୍ଥାନ ସୁନ୍ଦର ରୂପରେ ଅବସ୍ଥିତ କରେ, ଯୋଗାଏ । ପ୍ରଚଣ୍ଡନନ୍ଦନ—ଭୁଷଣ୍ଡକାକ । ନେତର କାନ୍ଥେଣୀ—( ନେତ ) ପଟ୍ଟବସ୍ତ୍ରବିଶେଷ, ( କାନ୍ଥେଣୀ ) କ୍ଷୁଦ୍ର ସୁନ୍ଦର ବସ୍ତୁ, ନେତର କାନ୍ଥେଣୀ—କ୍ଷୁଦ୍ର ସୁନ୍ଦର ପଟ୍ଟବସ୍ତ୍ର । ଚକା । ଚରଣ ବଇଠି ତଟ କଣି—( ଚକା ) ଜଗନ୍ନାଥ ମହାପ୍ରଭୁଙ୍କ ବିଜୟ ପୀଠ, ( ଚରଣ ବଇଠି ) ପାଦ ରଖିବାର ଉଚ୍ଚ ପୀଠ ( ତଟ ) ପ୍ରାନ୍ତ ( କଣି ) ବଳି ପଡ଼ିଥାଏ । ଚଣ୍ଡକର—ସୂର୍ଯ୍ୟ । ବୃହାଳ—ବିଶାଳ, ଗୋଲ ଓ ବଡ଼ । ନିଚଳ—ନିଶ୍ଚଳ । ଅଘତିମିର—ପାପରୂପ ଅନ୍ଧକାର । ଦସ୍ତୁଧୋଦମନକ ( ସଂସ୍କୃତ ) ସୁବାସ ଫୁଲ ବିଶେଷ । ଆଳମ୍ବ—ଝାଲର । ଡମ୍ବର—ଶୋଭା; ଏ ସ୍ଥଳରେ ମେଘର ଝୁଲିବା ଓ ଦୋଳି ଖେଳିବା । ଉପାଙ୍ଗ—ସହକାରୀ ବାଦ୍ୟ ବିଶେଷ । ଏହି ଅର୍ଥରେ ଏ ଶବ୍ଦ ମରହଟ୍ଟା ଭାଷାରେ ବ୍ୟବହୃତ ହୁଏ ।

"ଇକତ୍ତେ ବୀଣା ଢୋଲ ମୃଦଙ୍ଗ ଝାଞ୍ଜରୀ କିଙ୍କିଣୀ ଉପାଙ୍ଗ
ଦେବାଙ୍ଗନା ଯେହ୍ନେ ଉପଭୋଗ ବିଳାସ ବେଗେ ଭୁଲିଲା ।"

ଭ୍ରାନ୍ତି—ବିଭ୍ରମ ବା ବିଳାପ । ପ୍ରଳମ୍ବ ଅକ୍ଷରୁ—ପ୍ରଣବ ଅକ୍ଷରରୁ ।

---

## ଦ୍ୱିତୀୟ ଛାନ୍ଦ ।

ସାତବଂଶ—ସାତ୍ୱତଙ୍କର ଅନ୍ଧକ, ବୃଷ୍ଣି ପ୍ରଭୃତି ସାତ ପୁତ୍ର ଥିଲେ । ସେହି ବଂଶରେ ଶ୍ରୀକୃଷ୍ଣଙ୍କର ଜନ୍ମ, ତେଣୁ କବି 'ସାତବଂଶ' କହିଅଛନ୍ତି । ହୋଡ଼—ହୁଡ଼—ପଣ । ଅଭିରଙ୍ଗୀ—ବିଳାସମୟୀ । ବିରଙ୍ଗ—ବିରସ । ବେସନ—ବ୍ୟସନ, ଆହାର ବିହାର । ଚତୁଃସମ—ଚନ୍ଦନ, ଅଗୁରୁ, କୁଙ୍କୁମ, କସ୍ତୁରୀ ଲେପ । ହେଠ ( ପ୍ରାକୃତ )—(ସଂ) ଅଧଃ—ତଳ । ଦଣ୍ଡମଣ୍ଡ—ଦଣ୍ଡିବା ଓ ମଣ୍ଡିବା ଅର୍ଥାତ୍ ବିଗ୍ରହ ।

---

## ତୃତୀୟ ଛାନ୍ଦ ।

ଅଲେକତ—ଅଲୌକିକ । ଏମାନେହେଁ ନାହିଁ—ଏମାନେ ସମର୍ଥ ନୁହନ୍ତି । ବିଷଇ—ବିଷୟତା । ସେରନ୍ଧା—ଶ୍ରଦ୍ଧାଃ ଶ୍ରଦ୍ଧାବନ୍ତ ଶବ୍ଦରୁ ଅପଭ୍ରଷ୍ଟ । ଭଣ୍ଡାନ୍ତ—ଭଣ୍ଡାନ୍ତି । ସଂହରି—ସମ୍ଭାଳି, ରଖି । ଛିଷ୍ଟରି—ଦଣ୍ଡାୟମାନ ହୋଇ, ଠିଆ ହୋଇ ।

---

## ଚତୁର୍ଥ ଛାନ୍ଦ ।

ସୋହୋଡ଼—( ପ୍ରାକୃତ ) ସୋହର ( ସଂସ୍କୃତ ) ଶୋଭନ । ପଟୁଆରେ—ସେବକ । ଅପସର—ତକଆ, ମାଣ୍ଡି । ସଙ୍କଟସ୍ନେହା, ପରମଶୋଭା, କୋଟିକନ୍ଦର୍ପମୂରତିଆସ୍ରା, ପ୍ରବଳଭଣ୍ଡା, ଚକୁରଟିଙ୍କା, ପରାଣପିଆ, ବକାଚର, ବତ୍ସକଚଡ଼ା, ଗୀଳବମୋଡ଼ା, ମୁଣ୍ଡଫୋଡ଼ା, ମନ୍ଦରଧର, ମନ୍ଥନମର । କୁଳସଳଖା, ମାହୁନ୍ତପିଟା, ମାଲମାରୁଆ, ମଢ଼ଲାଲେଟା ଏସବୁ ଶବ୍ଦରୁ କାବ୍ୟର ପ୍ରାଚୀନତା ଜଣାଯାଏ ।

---

ଯମନିୟମାଦି—ଯୋଗର ଅଷ୍ଟଅଙ୍ଗ । ନିଗଅଦ୍ୱାସ୍ତି—ନିଗଦ୍ୱାର । ଜଳାଦ୍ୱାସ୍ତି ଅର୍ଥ ମଧ୍ୟ ପ୍ରଯୁଜ୍ୟ । ଆକଣ୍ଠା—ଆକାଙ୍କ୍ଷା । ନାସ୍ତିକେ—ଅସ୍ତିବରେ । କାଣ୍ଠିଲ—କାଙ୍କ୍ଷଇ, ଅଭିଳାଷକରେ । ଲୁଚ୍ଛିଯାଇ—ମୁଗ୍ଧ ହୁଏ, ଲଜ୍ଜା ବା ଦୁଃଖରେ ନମ୍ର ହେବା । ଏ ଶବ୍ଦର ପରେ ଦ୍ୱିତୀୟଚ୍ଛେଦ ଦାତବ୍ୟ । ତନ—ତନୁ ।

ନବମୀ } ଦୃଙ୍ ମନଃସଙ୍ଗସଂକଳ୍ପୌ ଜାଗରଃ କୃଶତାଽରତିଃ
} ହ୍ରୀ ତ୍ୟାଗୋନ୍ମାଦ ମୂର୍ଚ୍ଛାନ୍ତା ଇତ୍ୟନଙ୍ଗଦଶା ଦଶ ।
ଦଶମୀ } ନବମୀ—ମୂର୍ଚ୍ଛା, ଦଶମୀ—ମୃତ୍ୟୁ ।

ଗହ୍ୱବରେ - ଗହ୍ୱଳରେ ବା ଗହନରେ ।

---

## ଷଷ୍ଠ ଛାନ୍ଦ ।

ଲେଟ ଲେଟ ହୋଇ—ସଂକୁଚିତ ହୋଇ । ସୁପର୍ବାଣ—ଦେବତା । ମୃଗାକ୍ଷି—ମୃଗାକ୍ଷି । ମହାବିଭୂତି—ମହୈଶ୍ୱର୍ଯ୍ୟ । ସ୍ୱାନୁଭୂତି—ଆତ୍ମଜ୍ଞାନ, ଜୀବର ଅନୁଭୂତି । ମୂଳବିଭୂତି—ଷୋଡଶ ବିଭୂତିର ମୂଳ ବିଭୂତି । ( ମୁଖବନ୍ଧ ଦ୍ରଷ୍ଟବ୍ୟ ) ମହାଭୂତି—ମହାବିଭୂତି ଅର୍ଥରେ । ସାକ୍ଷ୍ମ—ସୂକ୍ଷ୍ମ, ସର୍ଯ୍ୟୈର୍ଯ୍ୟ ।

---

## ସପ୍ତମ ଛାନ୍ଦ ।

ସାନ୍ଧେ—ସଦ୍ଗୁଣ । ଗନ୍ଥି—ଯୁକ୍ତ ହୁଏ, ଯୋଗାଏ । ଙ୍କ—ଦାସ୍ତ । ( ୭ ମ ପଦ ) "ଗୋପୀ ତାଙ୍କ * * * * ପାଦ" ପଦ୍ମିନୀ—ଗୋପୀ, ସୂର୍ଯ୍ୟ—ଗୋପ, ଭୃଙ୍ଗ—ଶ୍ରୀକୃଷ୍ଣ, ଇଷାଳୁ—ଈର୍ଷାଳୁ,

ମେହ୍ମାନ—ଏ ଶବ୍ଦ ଅତ୍ୟନ୍ତ ପ୍ରାଚୀନ, ସାରଳା ଦାସ ଗ୍ରନ୍ଥରେ ମିଳେ । ଏହାର ଅର୍ଥ ମୁଗ୍ଧ । ବସରଲେ—ବସ୍ମରଲେ ।

---

## ଅଷ୍ଟମ ଛାନ୍ଦ ।

ଅଜାଗ—ଅଜାଣ, ଅଜ୍ଞାନକୃତ । ଗୃହପାତନା—ଗୃହ-ସଂସ୍ଥାପନା । ଗଡ଼ପାଳି—ଦଣ୍ଡବତ୍ ପଡ଼ି ପ୍ରଣାମ କରିବା । ଘୃଣା—ଡାର, ଘଟ—ସ୍ଥନ ।

---

## ନବମ ଛାନ୍ଦ ।

୭ ମ ପଦର ପାଠ ପାଦଟିପ୍ପଣୀ ଅନୁଯାୟୀ ମଧ୍ୟ ସମୀଚୀନ ।

ଅର୍ଲିକ୍ଷ—ଅନ୍ତରୀକ୍ଷ । ସୁହୃଦେ—ସୁହୃଦସ୍ଥ ବା ସୌହୃଦ୍ୟ; ଏଠାରେ ସ୍ୱାଗ । ପଟ୍ଟପ୍ରବନ୍ଧେ—ପକ୍କା, ଉତ୍କୃଷ୍ଟ ପ୍ରସଙ୍ଗରେ । ଜଡ଼ନ୍ତି—ଜଡ଼ବତ୍ ଆଚରଣ କରନ୍ତି । କାନ୍ଥନ୍ତି ଛଟା ଶୋଭା ଭଙ୍ଗିରେ ଦେଖାନ୍ତି । ପଟା-ମଣ୍ଡେଇ—ପଟ୍ଟମଣ୍ଡପ । ଭଦ୍ରଚଉପାଢୀ—ସର୍ବତୋଭଦ୍ର; ଚତୁର୍ଦ୍ଦ୍ୱାରଯୁକ୍ତ ମଣ୍ଡପ ବିଶେଷ । କୌଞ୍ଚଗବାକ୍ଷ—କୌଞ୍ଚପକ୍ଷୀଯୁକ୍ତ ଝରକା ବା କୌଞ୍ଚାକୃତି ଝରକା । ସମ୍ଭାଇଗଲେ—ମିଳିଗଲେ ।

"ସ୍ୱର୍ଣନିଧିପୁର ମଦନମନ୍ଦିର କେବଳ ଅଛି ଆଜିକି" ଦଇବ ହେ ।

ରାଧାଙ୍କ ଦଶାନୁରୂପ ଏ କେଳିସଦନ ପଡ଼ିନାହିଁ, ପତନୋନ୍ମୁଖୀ ହୋଇ ରହିଅଛି । ରାଧା ଜୀବିତା, କୃଷ୍ଣପ୍ରାପ୍ତି ଆଶାରେ ଜୀବନ ଅତି କଷ୍ଟରେ ଅଛି । କେଳିସଦନ ମଧ୍ୟ ଦୁହିଁଙ୍କ ପୁନର୍ମିଳନକୁ ଯେପରି ଅପେକ୍ଷା କରି ରହିଅଛି ।

---

## ଦଶମ ଛାନ୍ଦ ।

ଭ୍ରାନ୍ତ—ଭୀତ-ସ୍ତବ୍ଧ-ଶୋଷ୍ଣ । ଆନ୍ଦୁକ—ଆନ୍ଦ୍ରଭ-ପିବାଅସିବା; ଆକୁଳ । ମଣ୍ଡାପଲ୍ଲିଶ୍ୱା—ଫୁଲମଣ୍ଡା ପଲ୍ଲିଥିବା ବା ଯେ ମଣ୍ଡନ କରେ ଯେ ମଣ୍ଡା ତାହା ପଲ୍ଲିଥିବା । ଘୁଣ୍ଟୁରବନ୍ଧ—ପଣ୍ଡଖଡ୍ଡୁ ( ଲୁଣ୍ଠାଖଡ଼ୁ ) ସମବାଯ—ଅଳଙ୍କାରବିଶେଷ ବା ସମନ୍ୱିତ-ଲଗାଲଗି ହୋଇଥିବା । ଗରଗଣ୍ଡସ୍ତୁ—ଆଗଟଡ୍ଡୁ ( ଠିଆ, ଚଉ ଖଡ୍ଡୁକୁ କହନ୍ତି ) କୁଣଦାମ—କୁଣର ଶୃଙ୍ଖଳ-କାଇଥର ଦ୍ରେଉଁଣିଆ କରି ବାହାରେ ପିନ୍ଧନ୍ତି, ଖୋଳରେ ତାଡ଼ପତ୍ର କରି ମଧ୍ୟ କେତେକ ଯେନନ୍ତି । ବାହୁଟି—ହସ୍ତର ଅଳଙ୍କାରବିଶେଷ । ବାହାରେ ପିନ୍ଧନ୍ତି । ଝଲକ, ଝଲକା—କର୍ଣ୍ଣ ଭରଣବିଶେଷ । ପାଷ-ଗୋଟିଆ—ପାଷଗଣ୍ଠିଆ - କର୍ଣ୍ଣାଭରଣବିଶେଷ । ନାସାପୁଟିଆ—ନାସିକାର ଅଳଙ୍କାର । ଝୁଣ୍ଟିଆ—ପ୍ରପଦ-ପାଦ ଅଙ୍ଗୁଳିରେ ଯେନନ୍ତି ।

——

## ଏକାଦଶ ଛାନ୍ଦ ।

ସ୍ୱରମଣ୍ଡଳ—ବୀଣା ବିଶେଷ । ଯେଉଁ ବୀଣାରେ ଶ୍ରୁତିମଣ୍ଡଳଯୁକ୍ତ ସ୍ୱର ସମୂହରେ ଗ୍ରାମ ବିଶେଷର ମୂର୍ଚ୍ଛନା ଆସେ । ପିନାକ—ଧନୁରାକୃତି ସପ୍ତ-ତନ୍ତ୍ରିବିଶିଷ୍ଟ ବାଦ୍ୟଯନ୍ତ୍ର । ଅମୃତ—ସ୍ୱରବାଦ୍ୟବିଶେଷ, ଉପେନ୍ଦ୍ରଭଞ୍ଜ ଲବଣ୍ୟବତୀରେ ଏ ବାଦ୍ୟକୁ ବୋଧହୁଏ ଅମୃତଯଷ୍ଟା ବୋଲି କହିଅଛନ୍ତି ଯଥା—"ଧଇବ୍ର ଅମୃତ ଯଷ୍ଟା ଧ୍ୱନି ବେନି କରେ ।" ରବା—ହିନ୍ଦାସ୍ତାନ ଜାତୀୟ ବାଦ୍ୟ ଯନ୍ତ୍ର ବିଶେଷ, ପ୍ରାଚୀନ ନାମ ରୁଦ୍ରବୀଣା, ପାରସ୍ୟ ଭାଷାରେ ରବାବ୍ । ଡ଼ମ୍ଫ ପାରସ୍ୟ ଡ଼ଫ୍, ( ଇଂ ) **Tambourine** । ଢୋଲକ ଜାତୀୟ ବାଦ୍ୟବିଶେଷ । ଦୋସର ଦ୍ୱିସ୍ୱରବିଶିଷ୍ଟ ମହୁରୀ । ତାରଣୀ—ତାରଣୀ, ତାରେଣୀ । ଏହିପରି ଅନ୍ୟାନ୍ୟ ଶବ୍ଦମାନ ଦ୍ରଷ୍ଟବ୍ୟ । ଗଙ୍ଗବାଣ—ଏକ ଜାତୀୟ ନାଗକେଳି, ବାଡ଼ିସ୍ୱା ପଇତ । ଉଦ୍ଗାର—ଉଦ୍ଗାର, ଉଦ୍ଗାର,

ଉକ୍‌କାର, ହୁକାର । ମସ୍ମାଣ—କାମଦେବ ( ମଦନ ଶବ୍ଦରୁ ଅପଭ୍ରଷ୍ଟ ) ବାହ୍ମାଳଦ—ବାହାଭର, ଲଦବା—ଲଦ; ଗୋଇ—ଗୋପୀ ।

---

## ଦ୍ୱାଦଶ ଛାନ୍ଦ ।

କୃଶାନୁ—ଅଗ୍ନି । ଶଫର—ଜୈସ୍ତ୍ୟମାସ । ଗାଜଲେ—ଗର୍ଜ୍ଜନ କଲେ । ମେହ୍ନ—( ସଂ ) ମେଘ ( ପ୍ରାକୃତ ) ମେହ ( ଓଡ଼ିଆ ) ମେହ୍ନ ( ସଂ ) ରଥ ( ପ୍ରାକୃତ ) ରହ ( ଓଡ଼ିଆ ) ରହ୍ନ । ନିର୍ଘାତ —ଗ୍ରୀଷ୍ମଣ ବଜ୍ର । ବିଗଂଢିଲେ—ବିକସିତ ହେଲେ, ପ୍ରାଚୀନ ଶବ୍ଦ । ମୁହୂଁାଯ—ବିଷସ୍ପାଭିଳାଷ, ଆଯନ୍ତ ।

| | |
|---|---|
| ଶ୍ରୋଣେହା<br>ଶ୍ରୋଣେଷ୍ଟ | କାମୁକ, କାମୁକ୍ତା, ବୋଧହୁଏ ଶୋଣିତ ଶବ୍ଦରୁ ନିଷ୍ପନ୍ନ । କାରଣ ଶୋଣିତ—ଶ୍ରୋଣିତରୂପେ ଓଡ଼ିଅାରେ କହୃତ ମଧ୍ୟ ହୁଏ । |

ଷୁଣ୍ଡକେଷ୍ଟ—ଘାଗ ବା ଦଣ୍ଡବିଶେଷ । କେସର—ଜାଫ୍ରାନକେସର ବା ନାଗେଶ୍ୱର ଫୁଲର କେସର । ପୋଇ—ପୁଅାଇ, ପ୍ରାପସ୍ନନ୍ ( ସଂ ) ମିଠାଇ ପୁଅାଇବା, ଝଗ୍ର ପୁଅାଇବା ଇତ୍ୟାଦ । ଘାଣଆ—ଘାରଶବ୍ଦଜ ଉତ୍କୃଷ୍ଟ । ଖଣ୍ଡ—କନ୍ଦଟ୍ରସ । କନ୍ଦୁ ଖଣ୍ଡରୁ କନ୍ଦାଶବ୍ଦ ଅାସିଅଛୁ । ହାକଗର୍ଭ—କୋକିଳ । କୁରୁବେଲ—ତକ୍ତଗନ୍ଧ ବଶିଷ୍ଟ ପୁଷ୍ପବିଶେଷ । ଭଉଁରଲେ—ବିକଶିତ ହେଲେ, ଚଅଁର ପକାଇଲେ ।

---

## ତ୍ରୟୋଦଶ ଛାନ୍ଦ ।

ଭେଦ—ଜଡ଼ିତ ହୋଇଅଛୁ । ଝାରଗୀ—ଶରମୁଣା, ତୂଣୀର । ଲେଚ୍ଛ—ଛାଡ଼, ତ୍ୟାଗ କର । ଜାଗଲେ—ଖର୍ବ କଲେ । ଓହ୍ନୋଶଘାଇ—ସଂକୁଚତ ହୋଇଯାଇ ।

---

## ଚତୁର୍ଦ୍ଦଶ ଛାନ୍ଦ ।

ଗୁପ— ଖଙ୍ଗଗଢନ । ସୁପାତ—କୋମଳ ଓ ବହୁମୂଲ୍ୟ ଶେଯ । ଘଡ଼ାଇ—ପଡ଼ିଧାଉ, ପକାଇ । ଲଗ—କ୍ଷଣ । ରଜ ଚଆର—ଡାକ ଭୁଆଁଇ ।

---

## ପଞ୍ଚଦଶ ଛାନ୍ଦ ।

ଚନ୍ଦ୍ରଚୂଡ଼ଚୂଳି—ଚନ୍ଦ୍ରକୁନ୍ତଳ । ଜୀବଗ—ଜୀବଗଣଙ୍କୁ, ଜୀବନ । ଲିହଇ—ଲେଖଇ । ଫୁତ୍କାର—ଡାକ ।

---

## ଷୋଡ଼ଷ ଛାନ୍ଦ ।

ରଖି—ରେଖି, କଣ୍ଠ, ଓଡ଼ିଆରେ ରେଖାକୁ ମଧ୍ୟ ରଖା କହନ୍ତି । ଯଥା:—ଏକ ଲେଖା, ସହସ୍ରେ ରଖା । ବାରିଧିଫଳ—ମୁକ୍ତା । ବଳଣି—ବଳହୋଇଥିବା, ଗୋଲ, ବର୍ତ୍ତୁଳ, ବଳୀନଶଙ୍କୁ । ଧଟୀ—କଟି-ବସନ । କାନ୍ତ—କାନ୍ତି । ଅଙ୍ଘ୍ରି—ପାଦ । ମଞ୍ଜୀର—ନୂପୁର ।

---

## ସପ୍ତଦଶ ଛାନ୍ଦ ।

ଦଢ—ଦୃଢ଼ । ଅମ୍ବରେ—ନଭସ୍ଥଳରେ । ସ୍ଥବିରତାରୁ—ଅମ୍ବରେ ଧୀର ସ୍ଥିର । ଜମ୍ବୁନଦରୁ ଜମ୍ବୁନଦ ଆଣି—ସ୍ୱର୍ଣ୍ଣନଦୀରୁ ସ୍ୱର୍ଣ୍ଣଜଳ ଆଣି । ମେଢ଼—ଏକତ୍ରିତ କର । ପ୍ରଭା—ଆଲୋକମଣ୍ଡଳ ( Halo ) ବନ୍ଧୁକ ବାନ୍ଧୁଲି । ନଙ୍ଗ—ଅନଙ୍ଗ, କାମଦେବ । ଓଡ଼ିଆଣୀ—କଟିମେଖଳା । ନାକଚଣାକର୍ଣ୍ଣ—କର୍ଣ୍ଣ ନାକଚଣା, କର୍ଣ୍ଣ ବସା ନାକଚଣା ।

---

## ଅଷ୍ଟାଦଶ ଛାନ୍ଦ ।

ନଗନ୍ଧ—ସୁଗନ୍ଧପୁଷ୍ପବିଶେଷ । ମଦନା—ମାଧବୀଜାତୀୟ ପୁଷ୍ପଲତା-ବିଶେଷ । ସୁଖଭଦ୍ରା—ଭଦ୍ରମୁସ୍ତା ଲତାବିଶେଷ । ଦାରେହ୍ନାଦାଢ—ବଗହ୍ନଦଳରକ୍ତ ପୁଷ୍ପବିଶେଷ । କରୁଣା—ବାସନ୍ତୀ ପୁଷ୍ପବିଶେଷ । ରଙ୍ଗ-ଦୁଲାଲକୁମୁଦ—ଲାଲ ଓ ମନୋହର ରକ୍ତପଦ୍ମ । ଚନ୍ଦ୍ର ବିମ୍ବା—ଧବଳ ପୁଷ୍ପ-ବିଶେଷ । ତାରକଲଙ୍କ—ତାରାପରି ଶୋଭା ପାଉଥିବା ପୁଷ୍ପ । ମଧୁଦ୍ରବା—ମଧୁବହୁଳ ପୁଷ୍ପବିଶେଷ । କୁଟିଳା—ତଗରଜାତୀୟ ପୁଷ୍ପବିଶେଷ । ବୈଜୟନ୍ତୀ—ପଞ୍ଚବର୍ଣ୍ଣପୁଷ୍ପବିଶିଷ୍ଟ ଜାନୁ ପର୍ଯ୍ୟନ୍ତ ଲମ୍ବିତମାଳା । କୈରବ—ଧଳାକଇଁ ।

---

## ଊନବିଂଶ ଛାନ୍ଦ ।

କଦମ୍ବ—ସମୂହ । ହୁଙ୍କାର—ଓଁକାର । କାମଜ—କାମୋଦ୍ଦୀପକ ବାଦ୍ୟ । ତନ୍ତ୍ରକ ତାରବାଦ୍ୟ । ଫୁତ୍କାର—ମୁଖବାଦ୍ୟବିଶେଷ । ଚର୍ମଜ—ମୃଦଙ୍ଗ, ଡମ୍ଫଆଦି ବାଦ୍ୟ । ତାଳ—ଝାଞ୍ଜ । ମୁଦ୍ରା—ଭଙ୍ଗୀ, ଭଙ୍ଗୀ । ହେବାଇ ଦେଖାଇ, ହେବେର ଶିଜନ୍ତ । ସଶିଳ—ଶିଥିଳ । ପ୍ରମ୍ନିଣ ରହେ, —(ନାମଧାରୁ) ଜଡ ହୋଇ ରହେ । ବନ୍ଧୁ—ବନ୍ଧୁକାଶବରୁ ଅପଭ୍ରଷ୍ଟ । କାଳୀର ଆଳ—କାଳନ୍ଦୀହ୍ରଦ, କାଳୀୟନାଗବାସ । ଦୁଇଦଳ—ଦ୍ୱିତୀୟଦଳ ।

---

## ବିଂଶ ଛାନ୍ଦ ।

ତୁଳ—ତୋଳ । ତୁମ୍ଭଠହୁଁ—ତୁମ୍ଭଠାରେ । ତାଙ୍କଠହୁଁ—ତାଙ୍କ-ଠାରୁ । ଲୁଚୁହୋଇଯିବ—ଦୁଃଖରେ ସରିଯିବ । ସଂଘାତ—ସଙ୍ଗାତ, ସଙ୍ଗୀ । ଦୋସର—ଦ୍ୱିତୀୟ, ଅନ୍ୟ । ପୋସେଲା—ପୋହଲା । କଣ୍ଠାର—ଉପାର, ସର୍ଦ୍ଦାର, ରକ୍ଷକର । ଛନ୍ଦି—ଛନ୍ଦିସ୍ତ । ସ୍ୱେଖ—

ଉତ୍କୃଷ୍ଟ ଶ୍ରେଷ୍ଠ । ପ୍ରସର ହୋଇଲ—ସମାପ୍ତ ପ୍ରାପ୍ତ ହେଲ, ସନ୍ଧର ଫାଟିଗଲ ।

---

## ଏକବିଂଶ ଛାନ୍ଦ ।

ଅନ୍ତେଶ୍ୱରପୁର—ଅନ୍ତଃପୁରସ୍ଥ ମହାଦେବୀ ମନ୍ଦିର । ଚତୁର୍ଦ୍ଦଶପ୍ରମାଣ ( ବିଦ୍ୟା )—ଚାରି ବେଦ, ଷଡ଼ଙ୍ଗ, ଧର୍ମଶାସ୍ତ୍ର, ପୁରାଣ, ମୀମାଂସା, ତର୍କ । ଝାସି—ଦ୍ରୁତଗତିରେ ପ୍ରବେଶ କରି । ସଙ୍କ୍ଷିପି—ସଂକ୍ଷେପରେ ।

---

## ଦ୍ୱାବିଂଶ ଛାନ୍ଦ ।

ସୋମେ—( ସଂ ) ସୌମ୍ୟେ, ଉତ୍ତରଦିଗରେ । ବିପ୍ରଲବ୍ଧା—ଯେଉଁ ସ୍ତ୍ରୀ ସଙ୍କେତ ସ୍ଥାନକୁ ଯାଇ ନାୟକକୁ ପାଏ ନାହିଁ । ଉତ୍କଣ୍ଠିତା—ନିର୍ଦ୍ଦିଷ୍ଟ-କାଳରେ ନାୟକର ଅନୁପସ୍ଥିତିରେ ଯେ ଅତ୍ୟନ୍ତ ଶୋକାର୍ତ୍ତା ହୁଏ । ବାସକସଜ୍ଜା—ନାୟକର ଆଗମନ ପ୍ରତୀକ୍ଷାରେ ଯେଉଁ ନାରୀ ଆପଣା ଶରୀର, ଗୃହ ଓ ଶଯ୍ୟା ସଜ୍ଜିତ କରେ । କଳହାନ୍ତରିତା—ଯେ ନାୟିକା ନାୟକ ସହିତ କଳହହେତୁ ଦୂରରେ ରହି ଅନୁତପ୍ତା ହୁଏ । ସ୍ୱାଧୀନଭର୍ତ୍ତୃକା—ସ୍ୱାମୀଅଧୀନରେ ଯାହାର । ହରିଚନ୍ଦନ—ଦେବତରୁବିଶେଷ । ସନ୍ତାନ—ଦେବତରୁବିଶେଷ ।

---

## ତ୍ରୟୋବିଂଶ ଛାନ୍ଦ ।

ଛନାଇଲ—ଛଣାଇଲ । ଅଗୁରୁଆ—ଅଗରୁ, ଘନ, ଲଘୁ—ଓଡ଼ିଆରେ ଗରୁଆ ବା ଉଦ୍‌ବର୍ତ୍ତି ହେବରୁ ଅଗୁରୁ ଅଗୁଳ—ଉଗୁଳୁଆ ଅଗୁଳୁଆ—ଉଗୁଳଆ—ଅଗୁଳଆ ବହକା, ଉପ୍ଲବ, ବାକେ ।

ଗର୍ଭବାରତା — ଅନ୍ତର କଥା । ପ୍ରିୟମ୍ବଦା — ସ୍ୱପରେ ବୀଣାବାଦ୍ୟତତ୍ପର । ଛର — ଝର । ଶୋଧି — ଝଙ୍କରକରି, ଶୁଦ୍ଧକରି, କେବଳ । ଅମୋହ — ଅମୋଦଶବ୍ଦରୁ ।

---

## ଚତୁର୍ବିଂଶ ଛାନ୍ଦ ।

ଯଡଶ୍ରୋତା ଯାଇ ଦେହୁ ଧରେ କେତେଦନ — ଅନ୍ୱୟ — ପଡ ଯାହାର ଶ୍ରୋତା ( ପଢନା ) ( ସେ ) କେତେଦନ ଦେହ ଧରେ ? ଶ୍ରୋତା — ( ସଂ ) ଶ୍ରୋତ୍ର ବା ଶ୍ରୋତଶବ୍ଦରୁ ଉତ୍ପନ୍ନ — ଅର୍ଥ, ବେଦ, ଜ୍ଞାନ । ରସ୍ନଣୀ ରଜନୀ; ଆନ୍ତସ୍ରାନ୍ତ — ଆନ୍ତସ୍ରାନ୍ତ, ଆନ୍ତଶୂଳା ( ହାତଶୂଳା ବା ଅନ୍ତଶୂଳ ) ମର୍ମଭେଦାରକ । ଅଭିମାନରେ ବା କୋପରେ ଅଭିଯୋଗ ପୂର୍ବକ ପ୍ରିୟଜନଙ୍କୁ ବାକ୍ୟବାଣ ବିଦ୍ଧ କରିବା । ଉପଗ୍ରହଣ — ଗ୍ରାହ୍ୟ ବା ଅନ୍ୟଠାରେ ପ୍ରୟୋଗ । ଶୋଧି — ଶୁଦ୍ଧକରି ବା ଶୁଦ୍ଧି । ବଇଲେ — ବ୍ୟସ୍ତକଲେ । ଶୂରୁପା — ଶୂର୍ପ, କୁଲା । ଅନୁବ୍ରତେ — ସର୍ବଦା ।

ସମାପ୍ତ



---

ମୁଦ୍ରାକର — ଶ୍ରୀ ଗୋବିନ୍ଦ ସାହୁ, ବାସନ୍ତୀ ପ୍ରିଣ୍ଟର୍ସ, ମେରିଆ ବଜାର, କଟକ-୧

ଶ୍ରୀ

# ରହସ୍ୟମଞ୍ଜରୀ ।

ଭକ୍ତକବି ଦେବଦୁର୍ଲ୍ଲଭ ଦାସଙ୍କ

ବିରଚିତ ।

ବହୁପାଠ ଓ ସୁବିସ୍ତୃତ ମୁଖବନ୍ଧ ସହ

ରେଭେନ୍ସା କଲେଜର ଅଧ୍ୟାପକ

ଶ୍ରୀ ଆର୍ତ୍ତବଲ୍ଲଭ ମହାନ୍ତି ଏମ୍, ଏ, ଙ୍କ ଦ୍ୱାରା

ସଂକଳିତ

ଓ

ପ୍ରକାଶିତ ।

ଦ୍ୱିତୀୟ ମୁଦ୍ରଣ ।

Price 12 annas ମୂଲ୍ୟ ୧୨ ଅଣା ।

